# ସ୍ମରଣ କର ଭିକାରୀ ଚରଣ

(ଜୀବନ-ସନ୍ଧ୍ୟା ନଇଁ ଆସିଛି । ଯେଉଁ ସୂର୍ଯ୍ୟ ହସି ହସି ପୂର୍ବ ଦିଗରେ ଉଇଁଥିଲା; ପ୍ରାଣଭରି ଆଲୁଅ ଢାଳି ଦେଇ ଆଜି ପଶ୍ଚିମାକାଶରେ ବୁଡ଼ିଯାଉଛି ।)

ବୁଢ଼ା ଭିକାରୀଟିଏ କୁଡ଼ିଆ ଭିତରେ ବସିଥିଲା । ବେଢା ଚଉକି ଉପରେ ଛିଣ୍ଡା କନା ତଥାରେ ବନ୍ଧା ଖଣ୍ଡେ ପଡ଼ିଥିଲା । କୁଢ଼ିଆ ତମାମ ଜମିଥିଲା ଅଳେଇଡ଼ା ଦରବର ଭିଡ଼ । ଘାସ, କଅଁଳ, ବେଣା, କାଉଁଚ, କଣ୍ଟା, ସବେଇ, ଖଜୁରୀପତ୍ର ଆଦି ଭେଣ୍ଡେ ଜିନିଷ । ତାହାକୁ ଆପେ ଅଳିଆ, ଅଦନା ବୋଲି କହି ଘୃଣା କରନ୍ତି; ଫିଙ୍ଗା ଫୋପଡ଼ା କରନ୍ତି କିମ୍ବା ଚୂଲି ମୁହଁରେ ଦେଇଁ । ସେଇଥିକୁ ସେ ଦେଇଥିଲା ନୂଆ ରୂପ । ନୂଆ ମାନମର୍ଯ୍ୟାଦା ଆଜି ଅପୂର୍ବ ଆଦର । ଶ୍ରମ, ନୀରସ ଉପାଦାନରେ ଯେମିତି ଭରି ଉଠିଥିଲା ଜୀବନ ଓ ସରସତା । ତାହାର କାରିଗରୀ ସ୍ପର୍ଶରେ ଗଢ଼ା ସେହିସବୁ ଜିନିଷ ଆଧୁନିକ ବିଜ୍ଞାନର କଳ୍ପନାରେ ସୃଷ୍ଟି ହୋଇଥିବା ଚକଚକିଆ ଜିନିଷ ସାଥିରେ ଟକ୍କର ଦେଉଥିଲା । ବିଳାସ ବ୍ୟସନ ଭିତରେ ବଢ଼ୁଥିବା ଆଧୁନିକା ନାରୀ ଦେଖନ୍ତି ଆଜି ଆଦରରେ ସେହି ସବୁ ଜିନିଷ ଆଡ଼କୁ ହାତ ବଢ଼ାଏ ।

ଭିକାରୀଟି ପିନ୍ଧିଥିଲା ମୋଟା ଖଦି ଖଣ୍ଡେ । ଗୋଡ଼ରେ ଥିଲା ସସ୍ତା ଜଡ଼ରେ ଫିଙ୍ଗା ହୋଇଥିବା ମଠର ଚାପୁଡ଼ ଆଜି ନାଲିଆ ଘାସ ଉଠିଲାଣି ପେଲି ହେଲେ । ପାଖରେ ପଡ଼ିଥିଲା ଗୋଟିଏ ଖାତା

ଅଜ ନଜେଜେଷଣ୍ଡ କାଗଜ । ଅଷ୍ଟରେ ଭଲ ଦେଖାଯାଉ ନ ଥିଲା । ସମସ୍ତ ସମସ୍ତରେ ବୁଢ଼ା ସେଗୁଡ଼ିକୁ ଦସ୍ତଣ୍ଡି ଦେଉଥିଲା । ମନ ଭିତରେ ଯେତେବେଳେ ଭାବନାର ଲହରୀ ଉଠୁଥିଲା, ସେ ଖାଡି କଲମଟିରେ କେତେ କ'ଣ ଗାରେଇ ଯାଉଥିଲା । ତାକୁ କେହି ପଢ଼ି ପାରୁ ବା ନ ପାରୁ ସେଥିପ୍ରତି ତାର ନଜର ନ ଥିଲା । ତାକୁ କେହି ଜାଣୁ ବା ନ ଜାଣୁ ସେଥିପ୍ରତି ତା'ର କ୍ଷୋଭ ନ ଥିଲା । ବୁଢ଼ାର ମନରେ ସ୍ମୃତିର ବିପୁଳ ସମାବେଶ; ଦେହରେ ବୟସର ଦାଗ, ପଛରେ ଅତୀତର ଅଶା ନିରାଶା କରୁଣ କଥା । ଆଗରେ ଧୂଆଁଳିଆ ଅନାଗତ ବଦ୍ଧନରୁ ପରେଛାୟା, କଳା ଅଳନ୍ଧୁ ଲଗା ଭଙ୍ଗା ଅଥଚ ପ୍ରିୟ ଖଣ୍ଡାଟିକୁ ବୁଢ଼ା ସାଉଁଟି ଧରି ଏହାର ଛୁଞ୍ଚା ତାରରେ ନିଜର ଶୀର୍ଣ୍ଣ ଅଙ୍ଗୁଳିର ପରଶ ଦେବାକୁ ଅଗତ୍ତର ହେଉଥିଲା । ସେଥିରୁ ଯେଉଁ କରୁଣ ମୂର୍ଚ୍ଛନା ତୋଳି ଉଠୁଥିଲା, ତାହା ନିଜ ଅନ୍ତରର ଅଭିବ୍ୟକ୍ତି ମାତ୍ର । ଏହିପରି ଦହନମୟ ଓ ଦର୍ମମୟ ଜୀବନର ଗୋଧୂଳି ବେଳାରେ ସେହି ଭିକାରୀଟି ସହିତ ମୋର ପ୍ରଥମ ସାକ୍ଷାତ ।

ଏହି ଭିକାରୀଟି କିଏ ? ସେ ହେଉଛନ୍ତି ଆମର ଜାତମୂର୍ଦ୍ଧ ସ୍ୱର୍ଗୀୟ ଭିକାରୀ ଚରଣ ପଟ୍ଟନାୟକ । ଗାଁ ଗହଳର ତୋକା, ଶୋଷୀ ଓ ଶୋଷିତଙ୍କ ପାଇଁ ସେ ପ୍ରାଣପାତ ପ୍ରଚେଷ୍ଟା କରୁଥିଲେ । ଓଡ଼ିଶାର ପ୍ରାଚୀନ ଗୌରବ ଫେରାଇ ଆଣିବାକୁ; ଓଡ଼ିଆ ଜାତିର ହସ୍ତପାଠବର ନୂତନ ମୂଲ୍ୟାଙ୍କନ ନିମିତ୍ତ ସେ ପୁରପଲ୍ଲୀର କୋଳରେ କୁଟୀରଶିଳ୍ପର ଅଭ୍ୟୁଦୟ ଘଟାଇଥିଲେ । ସେ ଜାଣିଥିଲେ ଶିଳ୍ପପ୍ରାଣ ଦରିଦ୍ର ଓଡ଼ିଆ ଏହି ମାଧ୍ୟମରେହିଁ ତାର ଭାଗ୍ୟ ପୁନର୍ଗଠନ କରିପାରିବ । ଅତୀତର କଥା । ସେତେବେଳେ

ବିଦେଶୀ ଶାସନ-ଚକ୍ର ତଳେ ନିଷ୍ପେଷିତ ହୋଇ ଗାଁ ଗଣ୍ଡାର ଲୋକମାନେ ଦୁଃଖ ଦୈନ୍ୟରେ ସଢ଼ୁଥିଲେ । ବିଦେଶୀ ଶାସନର କୂଟବୁଦ୍ଧି ଓଡ଼ିଆ ଜାତିର ପାରମ୍ପରିକ ଶିଳ୍ପକଳା ଓ ବିଭବର ବିଲୟ ସାଧନ କରିଥିଲା । ଭିକାରୀଚରଣ ଉଚ୍ଚ ଶିକ୍ଷିତ ହୋଇଥିଲେ ବି ସେତେବେଳର ଆକର୍ଷଣୀୟ ସରକାରୀ ଚାକରୀ ଆଡ଼ୁ ତାଙ୍କ ସହିତ ଅଯାଚିତ ମାନ ସମ୍ମାନରେ ଜଳାଞ୍ଜଳି ଦେଇ କୁଟୀରଶିଳ୍ପର ଗବେଷଣା ଓ ବିକାଶରେ ମନୋନିବେଶ କରୁଥିଲେ । କିନ୍ତୁ ସେ ତାଙ୍କର ଉଚ୍ଚାଭିଳାଷ ପୂରଣ କରି ନ ପାରି ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । ୧୯୪୮ ମସିହାରେ ତାଙ୍କୁ ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ "ଡକ୍ଟର" ଉପାଧି ପ୍ରଦାନ କରାଗଲା, ସେ "ଅବସାଦ ବାଣୀ" ଶୀର୍ଷକ ଏକ ପ୍ରତିଭା ରଚନା କରିଥିଲେ । ବିଶ୍ୱବିଦ୍ୟାଳୟ-ପ୍ରଦତ୍ତ ଏହି ଉଚ୍ଚ ସମ୍ମାନରେ ଭିକାରୀ ଚରଣ ଆନନ୍ଦିତ ହୋଇ ନ ଥିଲେ । ବରଂ ଅତୀତ ଜୀବନର ବ୍ୟର୍ଥତା, ତିକ୍ତ ଅନୁଭୂତି ଏହାଦ୍ୱାରା ପୁନରୁଜ୍ଜୀବିତ ହୋଇ ଉଠିଥିଲା । ( ଭଗ୍ନ ବୀଣାର ଶୀର୍ଣ୍ଣ ତାରରେ ଚିରନ୍ତନ ବ୍ୟଥାଭରା ରାଗିଣୀ ବାଜି ଉଠିଛି,

"କାନ୍ଦୁଛି ମୋ ଜାତି ଶୁଣିଲେ ଶୁଣିବ
ମୋ ପାଇଁ ଅବସର ନାହିଁ ଦେଶରେ,
ଗୋଦନ ଭିତରେ ଉପାଧି ଭୂଷଣ
ଧସିଯିବ ସିନା ଅଶ୍ରୁ ଲହରେ ।")

ସ୍ୱର୍ଗୀୟ ଭିକାରୀ ଚରଣ ତାଙ୍କର ମହାନ୍ ଉଦ୍ୟମରେ ଜାତି ଠାରୁ ପୂର୍ଣ୍ଣ ସହଯୋଗ ଓ ଉତ୍ସାହ ପାଇ ପାରି ନ ଥିଲେ । ଅନେକେ ତାଙ୍କପ୍ରତି ବିଶ୍ୱାସଘାତକତା କରିଥିଲେ । ଅବଶ୍ୟ ସରଳ ଦରିଦ୍ର ଗ୍ରାମବାସୀମାନେ ଅତି ଆଗ୍ରହରେ ଏହି ଶିଳ୍ପ ଶିକ୍ଷା କରି

ଉପକୃତ ହୋଇଥିଲେ । ସୁଲଭ ଓ ଶସ୍ତା ଉପାଦାନରେ ଅନେକ ପ୍ରକାର ସୁନ୍ଦର ବ୍ୟବହାର୍ଯ୍ୟ ବସ୍ତୁ ପ୍ରସ୍ତୁତ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ଏପରିକ ଓଡ଼ିଶା ବାହାରେ ଓଡ଼ିଶାର କୃଟୀରଶିଳ୍ପ ସୁନାମ ଅର୍ଜନ କଲା ଏବଂ ବିଦେଶୀ ସରକାରଙ୍କ ସୁଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହେଲା; କିନ୍ତୁ କେତେକଙ୍କର ଦୁର୍ବୁଦ୍ଧି ଯୋଗୁଁ ଏହି ଶିଳ୍ପ କ୍ରମେ ଅଧଃପତିତ ହେଲା । ଦୀନଦୁଃଖୀଙ୍କ ପାଇଁ ସେ ଆଶାନୁରୂପ କିଛି କରି ନ ପାରି ବିଶେଷ ସନ୍ତପ୍ତ । ଯେଉଁମାନଙ୍କ ପାଇଁ କିଛି କରିପାରିବାର ଆଶା ରଖି ଓକିଲତି ପରି ଅର୍ଥ ଏବଂ ସମ୍ମାନଜନକ ବ୍ୟବସାୟରେ ଜଳାଞ୍ଜଳି ଦେଇ ଶିଳ୍ପ କ୍ଷେତ୍ରକୁ ସେ ଆଗେଇ ଆସିଥିଲେ, ସେମାନଙ୍କ ପାଇଁ ସେପରି କିଛି କରିବାକୁ ଅସମର୍ଥ ହୋଇଥିବାରୁ ନିଜ ଜୀବନ ବ୍ୟର୍ଥ ହେଲା ବୋଲି ସେ ଭାବୁଛନ୍ତି । ଯେଉଁ ଅନୁଷ୍ଠାନ ( **Orissa Poor Industry Collage** )ଟି ଏହି ଉଦ୍ଦେଶ୍ୟରେ ଗଢ଼ି ଉଠିଥିଲା, ତାହା ଆଜି ମୁମୂର୍ଷୁ । ସେ ତେଣୁ ଗାଉଛନ୍ତି :—

"ଆମ ଦେଶର ଆମ ଗରିବଙ୍କର
ଦିନ ଦଶା ଭଲ          ଫିଟିବ ଦିନରୁ
ଚିନ୍ତା ହେଉଥିଲା ମନ ମୋହର ।
ତାଙ୍କର ସେବାରେ ଖଟିବାପାଇ
ବଡ଼ ହେଲା ପରେ          ମନ ଦୃଢ଼ କରି
ଲାଗିଯାଇଥିଲି ଆସି ମୁଁ ଧାଇଁ ।
ଥିଲି ଅନେକ ଭରସା ଧରିଣ
ଟାଳି ଦି ଦୃଷ୍ଟି          ମନକୁ ମନାଇ
ପଶିଗଲି ଆସି ଏଇ ଛଟାରେ ।"

ସାଧାରଣ ଜନତା ସ୍ତବ୍ଧ ହୁଏ । କିନ୍ତୁ ସ୍ୱାଧୀନତା ଆନ୍ଦୋଳନ-ବେଳେ ନେତାମାନଙ୍କ ମନରେ ଯେଉଁ ପ୍ରକାର କାର୍ଯ୍ୟପରତା, ନିଷ୍ଠା, ନିସ୍ୱାର୍ଥପରତା ଓ ସେବା ମନୋବୃତ୍ତି ଥିଲା, ତାହା ଆଜି ଅପହୃତ ହୋଇଛି । ନିଜ ଦଳର ଶକ୍ତି ବଢ଼ାଇବା, ନିଜର ସୁଖ ସୁବିଧା ହାସଲ କରିବା ପାଇଁ ତୀବ୍ର ପ୍ରତିଯୋଗିତା କରିବା ବର୍ତ୍ତମାନ ମୂଳ ହେଲାଣି । ଏହି କାରଣରୁ କର୍ମଶୃଙ୍ଖଳା ଗୋଷ୍ଠୀରେ କର୍ମପ୍ରୀତି, ସାଧୁତା ଓ ଆନ୍ତରିକତା ନାହିଁ ଏବଂ ଅସନ୍ତୋଷର ବିକଟ ରୂପ ସମାଜକୁ ଗ୍ରାସ କରୁଛି । ଜଳସ୍ତନ କାର୍ଯ୍ୟରେ କୋଟି କୋଟି ଅର୍ଥ ଖର୍ଚ୍ଚ ହେଉଛି; ଅଥଚ ଆଶାଜନକ କିଛି ହୋଇପାରୁନାହିଁ । ତେବେ ତେଣୁ ବ୍ୟଙ୍ଗ କରି କହୁଛନ୍ତି—

"କେ ଜାଣେ ଏମନ୍ତେ ଟଙ୍କା ଝଡ଼ିବ
ଟଙ୍କାଗୁଡ଼ା କେଉଁଠି ରଙ୍କା ଚାଟି ଯିବ
ଗଡ଼ନ୍ତି ଆଡକୁ ଅନେ ଗଡ଼ିବ ।"

ଆଜିକାଲି କୁଟୀରଶିଳ୍ପ ଓ ହସ୍ତଶିଳ୍ପ ନାମରେ କୋଟି କୋଟି ଟଙ୍କା ଶ୍ରାଦ୍ଧ ହେଉଛି । କାଳେ କାଳେ ଦେଶପ୍ରେମୀମାନଙ୍କ ଭାବରେ ହସ୍ତଶିଳ୍ପର ଆବଶ୍ୟକତା ଓ ଉପାଦେୟତା ଆଜି ବଡ଼ ବଡ଼ ଅର୍ଥନୀତିବିଦ୍ ଓ ସମାଜସେବୀ ପଞ୍ଚବାର୍ଷିକ ଯୋଜନାରେ ସ୍ୱୀକାର କରୁଛନ୍ତି । ମହାତ୍ମାଗାନ୍ଧି ଏଥିପାଇଁ ଆଜୀବନ କାର୍ଯ୍ୟ କରି ଆସିଥିଲେ; କିନ୍ତୁ ଏମାନଙ୍କ ବହୁ ପୂର୍ବରୁ କୁଳବୃଦ୍ଧ ପ୍ରତିଭାଶାଳୀ ମଧୁସୂଦନ ହସ୍ତଶିଳ୍ପର ଜଳସ୍ତନ ଓ ପୁନରୁତ୍ଥାନ ପାଇଁ ଅଦମ୍ୟ ଉଦ୍ୟମ କରିଥିଲେ । ଏହି ମହାପୁରୁଷଙ୍କ ପଦାଙ୍କ ଅନୁସରଣ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ତରୁଣ ସ୍ୱାବଲମ୍ବୀ ବୁଦ୍ଧି, କର୍ମଭାବନା ଶକ୍ତି ଓ ସ୍ୱଦେଶ-ପ୍ରୀତି ଦ୍ୱାରା ଅନୁପ୍ରେରିତ ଓ ପରିଚାଳିତ

ଏଥିରେ ଲକ୍ଷିତ ହୋଇଛି କବିଙ୍କର ଉଚ୍ଚ ଜୀବନଦର୍ଶନ । ଅପର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଅସହିଷ୍ଣୁତା, ସ୍ୱାର୍ଥପରତା, ଲଘୁଭାବ ଓ ଛଳନା ଏହି କର୍ମବୀର ନିଷ୍ଠାପର କାର୍ଯ୍ୟ ସାଧକଙ୍କୁ ଅପାର ବେଦନା ଦେଇଛି । ଏହିସବୁ ଦୁର୍ଗୁଣ ଓ ଦୁର୍ଗତି ଯୋଗୁଁ ଜାତି ଆଜି ଆଶାଜନକ ଭାବରେ ଅଗ୍ରସର ହୋଇପାରୁନାହିଁ । ଚତୁର୍ଦ୍ଦିଗରେ ସାମ୍ପ୍ରଦାୟିକ ମନୋବୃତ୍ତି ଓ ଅତ୍ୟାଚାର ପ୍ରସରି ଯାଇଛି । ସ୍ୱାର୍ଥପରତା ଓ ପ୍ରିୟାପ୍ରୀତି ତୋଷଣ ଘନୀଭୂତ ହୋଇ-ଗଲାଣି । କବି ଏସବୁ ଦେଖି ନୀରବ ଓ ନିରାଶ ।

"ଦହି ହେଉଅଛି ମୋହର ଅନ୍ତର
ସହି ହେଉନାହିଁ କହି ହେଉନାହିଁ
ଗୃହିଁ ଗୃହିଁ ରହିଅଛି ମାତର ।"

(ଦେଶପ୍ରୀତି ନାମରେ ଆଜି ଭଣ୍ଡାମି ଚାଲିଛି, ଜାତି-ମଙ୍ଗଳ ନାମରେ ଆତ୍ମମଙ୍ଗଳ ପାଇଁ ପ୍ରାଣାନ୍ତକ ଚେଷ୍ଟା ।) ଉଭୟ ଭଲା, ଧର୍ମ ଓ ବସ୍ତ୍ରପାଟବ, ଯେଉଁଥିରେ ଏ ମହାଜାତିର ଅନ୍ତର୍ନିହିତ ପ୍ରାଣସତ୍ତ୍ୱ ଆତ୍ମପ୍ରକାଶ କରିଥିଲା, ତା'ର ବିକାଶ ସାଧନ ହୋଇପାରୁ ନାହିଁ । ମହାତ୍ମାଗାନ୍ଧିଙ୍କ ନୀତି ନାମରେ ଦେଶରେ କେବଳ ଶଠତା, ନୀତିହୀନତା ବ୍ୟାପି ଯାଉଛି । ତେଣୁ କବି ଗାଇଛନ୍ତି :—

"ଜାତି ଜଗାଇବା ନାମର ଭଣ୍ଡରେ
ଶୁଣି ଶୁଣି ମନ ଭଣ୍ଡିବା ଭାଷଣ
ଦଣ୍ଡ ହେବା ଦେଖି ଏବେ ଦାଣ୍ଡରେ ।"

ଆମର ସ୍ୱାଧୀନ ଦେଶରେ ଯୋଜନା ପରେ ଯୋଜନାର ଆବିର୍ଭାବ ଓ ପରିସମାପ୍ତି ଘଟୁଛି । ଯୋଜନାର ଘୋଡ଼ା ଦୌଡ଼ ଦେଖି

ଜାତିକୁ ନିଃସ୍ୱ ମହାନ୍ କରି ତୋଳିବ । ଅଦୂର ଭବିଷ୍ୟତରେ ସୁଖ-ସମୃଦ୍ଧିର ସ୍ୱର୍ଣ୍ଣ ହସିଉଠିବ । ତା'ର କାରଣ ଓ ସମ୍ଭାବନା ଆମର ଜାତିପ୍ରାଣ ଭିକାରି ଚରଣଙ୍କୁ ଅଛପା ନାହିଁ । ସେ ଜାଣିଛନ୍ତି—

"ବାପ ଅଜାଙ୍କର ଶିଳ୍ପ ଶକତ
ଲୁଚି ଲୁଚି ଅଛି ଜାତି ରକ୍ତରେ
ଫୁଟିବ ଫେରିଲେ ଆମର ମତ ।"

ଭିକାରି ଚରଣଙ୍କ ଜୀବନ ଓ କାର୍ଯ୍ୟକଳାପ ଉପରେ ଜାତି-ପିତା ମଧୁସୂଦନଙ୍କ ମନ୍ତବ୍ୟ ଓ ପରାମର୍ଶ କେତେଦୂର ସରସ ଓ ମଧୁମୟ, ତାହା ନିମ୍ନଲିଖିତ ଗୋଟିଏ ପତ୍ର ଉଦ୍ଧୃତରୁ ସ୍ପଷ୍ଟ ହେବ ।

Mission Road, Cuttack
9th February, 1933

My dear Bhikari Babu.

I prefer to call you by the name Bhikari without your title Rai Saheb. When naming you "Bhikari" your parents had a prophetic insight into the activities to which you have devoted yourself for improving the means of livelihood of the poor people of Orissa. The first thing necessary in any attempt to improve [illegible] of poor people is to realise the [illegible] genuine sympathy for the poor people

ହୋଇଥିଲେ । ଶସ୍ତା ଓ ସହଜଲଭ୍ୟ ଉପାଦାନକୁ ନେଇ ନବ ଉଦ୍ଭାବିତ ଉପକରଣ ସାହାଯ୍ୟରେ ସେ ମୂଲ୍ୟବାନ ଓ ସୁନ୍ଦର ସୁସଜ୍ଜ ଦ୍ରବ୍ୟ ଉତ୍ପାଦନ କରିବାର ବ୍ୟବସ୍ଥା କରିଥିଲେ । ଏଥିଯୋଗୁଁ ବିଦେଶୀ ସରକାରଙ୍କଠାରୁ ସମ୍ମାନ ଓ ପ୍ରତିଷ୍ଠା ପାଇଥିଲେ ମଧ୍ୟ ଜାତୀୟ ସରକାରଙ୍କଠାରୁ ଆଶାନୁରୂପ ଉତ୍ସାହ ନ ପାଇ ବ୍ୟଥିତ ହୋଇଛନ୍ତି ଓ ଗାଇଛନ୍ତି—

"ମୋହର ଧାଇଙ୍କ ଠାରେ ମୁଁ ପର
ଥାଉଁ ଥାଉଁ ଏବେ    ଯେତେ ହରବର
କା'ଠାରୁ ଖୋଜିବି କେଉଁ ଆଦର । × ×

କାମଧାଇ ଯାହା ଖଣ୍ଡିଆ ଭଲ
ଗୁଡ଼ପିଠ ତାଙ୍କୁ    ପୋଡ଼ ନ ପକାନ୍ତୁ
ଏତିକି ମାଗୁଣି ଧାଇ ମୋହର ।"

ଏଥି ହେଉଛି କର୍ମବୀର ଉତ୍କଳୀୟ ଚରଣଙ୍କର ମର୍ମବାଣୀ ଧ୍ୱନିର ତ୍ୟାଗ ଓ ନିଷ୍ଠାରେ ପ୍ରତିଷ୍ଠିତ ଶିଳ୍ପସଂସ୍ଥା କେବଳ ଅବହେଳିତ ଓ ବିଧ୍ୱସ୍ତ ନ ହେଉ, ଏଥିପାଇଁ ଜୀବନ ସନ୍ଧ୍ୟାରେ ତାଙ୍କର ଏତେ ଶଙ୍କାକୁଳ ନିବେଦନ । ବର୍ତ୍ତମାନ ସେ ଆଉ ନାହାନ୍ତି; କିନ୍ତୁ ଜାତି ପ୍ରତି ତାଙ୍କର ଅବଦାନ ସମସ୍ତେ ହୃଦୟଙ୍ଗମ କରନ୍ତୁ ଏବଂ କର୍ମବୀରଙ୍କ ଅକ୍ଳାନ୍ତ ଶ୍ରମ, ଅଧ୍ୟବସାୟ ଓ ଗବେଷଣାପ୍ରସୂତ କୃତିଗୁଡ଼ିକରେ ଲୁଚିଥିବା ତାଙ୍କର ଶିଳ୍ପାନୁଷ୍ଠାନଟି ଏକ ସ୍ମାରକ ସଂଗ୍ରହାଳୟ ରୂପେ ପ୍ରତିଷ୍ଠିତ ହେଉ, ଏହା ଜାତି ତଥା ସରକାରଙ୍କଠାରେ ଆମର ହାର୍ଦ୍ଦିକ ନିବେଦନ ।

ଆମ ଜାତିର ଧନଜାତ ପାରମ୍ପରିକ ବସ୍ତ୍ର ଶିଳ୍ପ ଓ କଳାର ଅନ୍ତର୍ନିହିତ । ଭବିଷ୍ୟର ଆଶା ଅଛି, ସେହି ବସ୍ତ୍ରର ସଦ୍‌ବ୍ୟବହାର

ସ୍ଥାପନ କରି ଅବଶେଷରେ ଅଧମର୍ଣ୍ଣ ( bankrupt ) ହୋଇଥିଲେ । ଯେ ଜାତିର ଯଜ୍ଞବେଦୀରେ ଯୂପକାଠି ହୋଇ ନିଃଶେଷ ହୋଇଥିଲେ, ଯେଉଁଲୋକ ସର୍ବଦା କହୁଥିଲେ,— “ ଯାଉ ସର୍ବ, ଥାଉ ଆପଣା ମହତ୍ୱ ଥାଉ ରହି ” । ଜାତିର ମାନ ମର୍ଯ୍ୟାଦା ବଢ଼ାଇବା ଯାହାର ଜୀବନର ମୂଳମନ୍ତ୍ର ଥିଲା, ସେ ପୁଣି କହୁଛନ୍ତି—“ଓଡ଼ିଶାର ଶିଳ୍ପୋନ୍ନତି ପାଇଁ ମୋର ପ୍ରଚେଷ୍ଟା ସମ୍ପୂର୍ଣ୍ଣ ବିଫଳ ହୋଇଛି ଏବଂ ମୋତେ ଦାଣ୍ଡର ଭିକାରି କରାଇଛି ।” ମଧୁସୂଦନଙ୍କ ମର୍ମବାଣୀ ଏଥିରେ ଅଭିବ୍ୟକ୍ତ ହୋଇଛି । ଏହାପରେ ଗୋଟିଏ “ଭିକାରି” ଅନ୍ୟ ଏକ “ଭିକାରି” ପ୍ରତି ସହାନୁଭୂତି ଜଣାଇଛନ୍ତି ଏବଂ ଜାତିର ସେହି ବିପଦସଙ୍କୁଳ ପଥରେ ସାବଧାନ ହୋଇ ଚଳିବାକୁ ପରାମର୍ଶ ଓ ଆଶୀର୍ବାଣୀ ଶୁଣାଇଛନ୍ତି । ଯେଉଁ ନୂତନ ଶିଳ୍ପୀର ଭବିଷ୍ୟତ ଦୁଃସ୍ଥ ହେବନାହିଁ ବୋଲି ମଧୁସୂଦନ ଆଶା କରିଥିଲେ, ତାହା ଆଶଙ୍କାରେ ପରିଣତ ହୋଇଛି । ଜାତିର ପଥପ୍ରଦର୍ଶକଙ୍କ ନିର୍ଦ୍ଦେଶରେ ଭିକାରି ଚରଣ ନିଜକୁ ଦୀନ ଦରିଦ୍ର ଦେଶବାସୀଙ୍କ ଅବସ୍ଥାରେ ରଖିଥିଲେ ଏବଂ କୁଟୀର ଶିଳ୍ପ ମାଧ୍ୟମରେ ଦେଶର ସମୃଦ୍ଧି ପାଇଁ ଆପ୍ରାଣ ଚେଷ୍ଟା କରି ଆସିଥିଲେ । ଦୁଃସ୍ଥମାନଙ୍କ ପ୍ରତି ଦରଦୀ ହୋଇ ସେ ମଧ୍ୟ ଅନ୍ତିମ ଜୀବନରେ “ଭିକାରି” ହୋଇଥିଲେ । ତେଣୁ ସେ ଗାଇଛନ୍ତି—

“ହେବାକୁ ଗରିବ ତାଙ୍କ ସଙ୍ଗରେ
ସହଜେ ବୁଝିଲି ଜ ଦୁଃଖ ତାଙ୍କର
ବେଗି ଦୁଃଖ ଦଶା ନିଜ ଅଙ୍ଗରେ ।”

ଏହା ହେଉଛି କବି-ଶିଳ୍ପୀଙ୍କର ଅକଳଙ୍କ ଅନୁଭୂତି । ସେ ଜୀବନ ସନ୍ଧ୍ୟାରେ ସଂସାର-ସଉଦା ସାରି ଫେରିବାବେଳେ ନିଜର

one must place himself in the daily trials of their life regardless of their consequences which an attempt to improve their economic condition might effect you × × ×. I have been really struck with your sincere sympathy and your strenuous efforts to improve their economic condition. You ask me to write something on the Visitor's Book. I should not be justified in doing so, for you know my efforts to improve the industries of Orssa proved a perfect failure, bringing me to the position of a street beggar. I do hope you will not meet with the failure that I met. Your present position requires something more than mere expression of appreciation of your virtue. × × × × May god bless you with success is the sincere prayer of yours very sincerely.

Sd. M. S. Das.

ଏହି ଅମୂଲ୍ୟ ଚେଳଲିପିଟି ବାସ୍ତବରେ ଜାତିପାଇଁ ଗୋଟିଏ ବିରାଟ ଚେତାବନୀ । ଏଥିରେ ଅଭିବ୍ୟକ୍ତ ହୋଇଛି ଜଣେ ସହାନୁଭୂତିଶୀଳ ବ୍ୟଥାତୁର ଜନନାୟକଙ୍କର ନିଜ ଅଭିଜ୍ଞତାପ୍ରସୂତ ଉପଦେଶ ଓ ନିର୍ଦ୍ଦେଶ, ଅନ୍ୟ ଏକ ଉଦୀୟମାନ ଦେଶସେବୀଙ୍କ ଘଡ ।

ପୁଣ୍ୟଶ୍ଳୋକ ମଧୁସୂଦନ କୋଟି କୋଟି ଟଙ୍କା କମାଇ ସୁଦ୍ଧା ଉତ୍କଳ ଟ୍ୟାନେରୀ, ଓଡ଼ିଶା ତାରକସି ଶିଳ୍ପ ପ୍ରଭୃତି ଅନୁଷ୍ଠାନ

ବ୍ୟଙ୍ଗାତ୍ମକ ଓ ଲଘୁ ହାସ୍ୟରସର ପ୍ରୟୋଗ, ନାଟକ ଓ ପ୍ରହସନ-ଗୁଡ଼ିକୁ ଅତୀବ ମର୍ମସ୍ପର୍ଶୀ ଓ ପୁଷ୍କଳ କରି ତୋଳିଛି । ଏଗୁଡ଼ିକରେ ପ୍ରକାଶ ପାଇଥିବା ମାନବବାଦ, ଦୂରଦୃଷ୍ଟି ଓ ସୂକ୍ଷ୍ମ ବିଚାର ଚିରନ୍ତନ ଓ ମନୋରମ ।

ଏହା ବ୍ୟତୀତ କବିଙ୍କର କବିତାଗୁଡ଼ିକ ଉଲ୍ଲିଖିତ ଲକ୍ଷଣାକ୍ରାନ୍ତ ହେବା ସଙ୍ଗେ ସଙ୍ଗେ ତତ୍କାଳୀନ ଓ ଆଧୁନିକ ସମାଜର ଅନ୍ୟାୟ ଅତ୍ୟାଚାର, କୁସଂସ୍କାର, ଅନ୍ଧବିଶ୍ୱାସ ଓ ଛଳନା ଆଦି ଭଣ୍ଡାମି ବିରୁଦ୍ଧରେ ଶାଣିତ ବ୍ୟଙ୍ଗବାଣ ରୂପେ ବ୍ୟବହୃତ ହୋଇଛି । "ସ୍ୱଦେଶ ଦର୍ପଣ" ଶୀର୍ଷକ କବିଙ୍କର ଗୋଟିଏ କବିତା ସଙ୍କଳନର ମୁଖବନ୍ଧରେ ବିଶିଷ୍ଟ ସାହିତ୍ୟିକ ଲକ୍ଷ୍ମୀଧରଚରଣ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି—"କି କବି, କି ଗୋଷ୍ଠୀ, କି ସମାଜ କେହି ତାଙ୍କ ନିର୍ଦ୍ଦୟ କଷାଘାତରୁ ନିଷ୍କୃତି ପାଇନାହାନ୍ତି । ଆମ ଦେଶର ଇଂରେଜୀ ପଢୁଆମାନେ ବ୍ୟଙ୍ଗ କବିତା ବିଷୟ କହିଲବେଳକୁ ଇଂଲଣ୍ଡର କବି ପୋପ୍ ଓ ଅଡ଼ିସନ୍ଙ୍କ ବିଷୟରେ ବଡ଼ାଏ କଥା କହିବେ । ସ୍ୱଦେଶର ଏ ଭିକାରୀଚରଣ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ଚିହ୍ନିକୁ ଆସିବ ନାହିଁ । ଭିକାରୀଚରଣଙ୍କ ବ୍ୟଙ୍ଗ କବିତାବଳୀ ଓ ସଂଗ୍ରହକୁ ପଢ଼ିସାରିଲା ପରେ ମୋର ମନେହୁଏ ଯେ, ସେ ଏକାଧାରରେ ଓଡ଼ିଶାର ପୋପ୍ ଓ ଅଡ଼ିସନ ।")

ବାସ୍ତବରେ ବ୍ୟାସକବି ଫକୀରମୋହନଙ୍କୁ ଛାଡ଼ିଦେଲେ ଭିକାରୀଚରଣ ହେଉଛନ୍ତି—ଅଦ୍ୱିତୀୟ ବ୍ୟଙ୍ଗକାର (Satirist) । ଜାତିର ଦେହରେ ଥିବା କ୍ଷତ ଓ କ୍ଷତକୁ ସେ ସଫଳ ଅସ୍ତ୍ରୋପଚାର କରିବାକୁ ଇଚ୍ଛା କରୁଥିଲେ । ସେ ତତ୍କାଳୀନ ସାମାଜିକ

"ଅବସାଦ ବାଣୀ"ରେ ହୃସାବ ନିଜାଷ କରିଛନ୍ତି । ବିଗତ ଜୀବନର ଅଶ୍ରୁଳ ସ୍ମୃତି ଚେଇଁଉଠିଛି । ମନର କଥା ପ୍ରକାଶ କରିବାକୁ ଭାଷା ପାଇ ନାହାନ୍ତି । ଅନ୍ୟ ଆଗରେ ମନୋବେଦନା ପ୍ରକାଶ କଲେ ଏହା ଲଘବ ହୁଏ । ଏହି ଆଶାରେ ସେ ଗାଇଛନ୍ତି—

"ମରିବା ଆଗରୁ ମର୍ମ କଥା
ପଦେ ଅଧେ ଖାଲି ଢାଳି ଦିଅ ମରଣି
ଛିଡ଼ୁ ପକାଇଲି
ମରିବା ପାଇଁ କ ମନର ବ୍ୟଥା ।"

ଏହି ବିଦଗ୍ଧ ଆତ୍ମାର ପ୍ରତିଧ୍ୱନି ପ୍ରତି ଜାତି କର୍ଣ୍ଣପାତ କରୁ ଏବଂ ଏହି ଅମର ଅବିସ୍ମରଣୀୟ ଜୀବନରୁ ମହାନ୍ ଶିକ୍ଷାଲାଭ କରି ଜାତି ତା'ର ପ୍ରଗତି-ପଥ ନିର୍ଦ୍ଧାରଣ କରୁ, ଏହା ଆଶା ଓ ଅନୁରୋଧ ।

ଗୁରୁଶରଣବାବୁ ଭିକାରୀଚରଣ ପଟ୍ଟନାୟକ କଲେଜରେ ଅଧ୍ୟୟନ କରିବା ସମୟରୁ ବହୁତ ନାଟକ, କାବ୍ୟ, କବିତା ଲେଖି ଦେଶବାସୀଙ୍କ ମନରେ ଜାତୀୟତାର ଜାଗୃତି ପାଇଁ ଜାତିର ମୁମୂର୍ଷୁ ଜୀବନରେ ନୂତନ ପ୍ରାଣସ୍ପନ୍ଦନ ଖେଳାଇ ଦେବାପାଇଁ ଚେଷ୍ଟା କରିଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଏହି କବି ପ୍ରଥମେ 'କଟକ ବିଜୟ', 'ଝଙ୍କାରଚନ୍ଦ୍ର', 'ସୁଶୀଳା', 'ରତ୍ନମାଳି', 'ରାଜା ପୁରୁଷୋତ୍ତମ', 'ନନ୍ଦକେଶ୍ୱରୀ' ପ୍ରଭୃତି ନାଟକ ଓ 'ଶ୍ରେଷ୍ଠ ଭିକାରୀ', 'ଯୌତୁକ' ପ୍ରଭୃତି ଅନେକ ପ୍ରହସନ ଲେଖି ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲେ । ସେଗୁଡ଼ିକରେ ଲେଖକଙ୍କର ଝଙ୍କାରଲିପ୍ସା ଓ ଜାତୀୟତା ଅମର ଓ ଅପୂର୍ବ ଭାବରେ ଅଭିବ୍ୟକ୍ତ । ନାଟ୍ୟକାରଙ୍କ ସ୍ୱକୀୟ ଶୈଳୀ, ମୌଳିକ ଦୃଷ୍ଟିକୋଣ, ସରଳ, ସରସ ଭାଷା,

ଅଧୋଗତର ନିଖୁଣ ରୂପାୟନ ଦେଇ, ତାର ମାଧ୍ୟମରେ ଏହି ଅଧୋଗତର କର୍ତ୍ତାମାନଙ୍କୁ ଅସହ୍ୟ ବ୍ୟଙ୍ଗବିଦ୍ରୂପ କରିଛନ୍ତି । ତାଙ୍କର ଅନ୍ତରାତ୍ମା ଦେଶର ଏ ଦୁର୍ଗତିରେ ବ୍ୟଥିତ ହୋଇ ହା ହା କାର କରି ଉଠିଛି । ତଥାକଥିତ ଜାତନେତା ଓ ସମାଜ-ପଣ୍ଡାମାନଙ୍କ ପିଠିରେ ଚାବୁକ୍ ପିଟି ଚୈତନ୍ୟୋଦୟ କରିବାକୁ ସେ ଜଣେ ଶକ୍ତିଶାଳୀ ବ୍ୟଙ୍ଗକାର ଭାବରେ ଚିର ଅବିସ୍ମରଣୀୟ ହୋଇ ରହିବେ । ଲେଖକଙ୍କର ଏହି ଯୁଗାନ୍ତକାରୀ କୃତିଗୁଡ଼ିକୁ ଅଧ୍ୟୟନ କରି ଜାତିପିତା ମଧୁସୂଦନ ଦାସ ତାଙ୍କୁ ଅଭିନନ୍ଦନ କରିବାକୁ ଯାଇ ତା ୧୬।୬।୧୭ ମସିହାରେ ଏକ ପତ୍ରରେ ଲେଖିଥିଲେ "Your books aim at removing some of the evils, which have crept into the present social life of Orissa. × × × Viewed from this stand point your authorship has valuable and timely mission—your quaint humour has an attraction altogether its own. There is an under-current of sarcasm and ridicule in some of your books, which on this stage, ought to prove powerful help to earnest worker of social reform." ପ୍ରକୃତରେ ସମାଜର ଦୋଷ ଦୁର୍ବଳତାକୁ ଦୂର କରିବାକୁ ଯାଇ ସେ ଯେପରି ହାସ୍ୟରସର ପ୍ରବାହ ଛୁଟାଇଛନ୍ତି, ତାହା ଅତ୍ୟନ୍ତ ମନୋଜ୍ଞ ଓ ମଧୁର; କିନ୍ତୁ ଏହାର ଅନ୍ତରାଳରେ ବ୍ୟଙ୍ଗବିଦ୍ରୂପର ଯେଉଁ ଉଚ୍ଛଳ ଅନ୍ତଃସ୍ରୋତା ଫଲ୍ଗୁ-ଧାରା ପ୍ରବାହିତ, ତାହା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ତତ୍କାଳୀନ ଜାତୀୟ ଅନୁଷ୍ଠାନ "ଉତ୍କଳ ସମ୍ମିଳନୀ" ପ୍ରତିଷ୍ଠାରେ ମଧୁସୂଦନଙ୍କ ପ୍ରଚେଷ୍ଟା ଓ ନିଷ୍ଠା ସହିତ ଭବ ୧୯୧୭ ମସିହାରେ

ଅନୁଷ୍ଠିତ ହେଉଥିବା ଉତ୍କଳ ସମ୍ମିଳନୀର ଉଦ୍ୟୋକ୍ତା ଓ ବକ୍ତାମାନଙ୍କ ନିଷ୍ଠା ଓ ଆନ୍ତରିକତା ତୁଳନା କରିଛନ୍ତି । " ଉତ୍କଳ ସମ୍ମିଳନୀ " ଶୀର୍ଷକ କବିତାଟି ବାକ୍ୟବୀରମାନଙ୍କ ପାଇଁ ଏକ ବ୍ୟଙ୍ଗାତ୍ମକ ସମାଲୋଚନା । କବି ଏଥିରେ ଗାଇଛନ୍ତି—

"ଦୁଇଦିନ ମହା ଆନନ୍ଦେ ସର୍ବେ ନାଚନ୍ତି ଥରେ
ଦେଶ ଦେଶ ବୋଲି ଡାକନ୍ତି ତେବେ ଅତି ଉଚ୍ଚରେ ।
କଳ୍ପନା ଜଳ୍ପନା ଲଗାଇ କେତେ କେତେ ପ୍ରକାର
ମଣ୍ଡପ କମ୍ପାଇ ଦିଅନ୍ତି କରି ଜୟ ଚିତ୍କାର ।
ମଣ୍ଡପୁ ଓହ୍ଲାଇ ବକ୍ତାଙ୍କ ମନେ ମନେ ବିଚାର
କେଜାଣି ସେ କରିଆସିଲେ ଏବେ ଦେଶ ଉଦ୍ଧାର ।"

ବକ୍ତୃତା ଦେଇ ସାବାସ୍ ନେବାରେ ବକ୍ତାମାନଙ୍କର ଆଗ୍ରହ ପ୍ରକାଶ । ମଧୁସୂଦନଙ୍କ ମହତ୍ ଉଦ୍ଦେଶ୍ୟ ନେଇ ଗଢ଼ିଉଠିଥିବା ଉତ୍କଳ ସମ୍ମିଳନୀ କେବଳ ଏକ ପ୍ରହସନରେ ପରିଣତ ହୋଇଛି । ପ୍ରତିବର୍ଷ ଏହାପରି ସମ୍ମିଳନୀ ବସେ । ବିଭିନ୍ନ ପ୍ରସ୍ତାବ ଗୃହୀତ ହୁଏ । କିନ୍ତୁ କୌଣସିଟି କାର୍ଯ୍ୟରେ ପରିଣତ ହୁଏ ନାହିଁ । ବାକ୍ୟବୀରମାନଙ୍କ କର୍ମରେ କୌଣସି ନିଷ୍ଠା ନ ଥାଏ । କବି ଏହି କଥାକୁ ବିଦ୍ରୂପ କରି କହିଛନ୍ତି—

"ଯେ ଯାହା ଘରକୁ ଫେରିଲେ କାର୍ଯ୍ୟ ହୋଇଲା ଶେଷ
ମୁହିଁ ମାଡ଼ି ପଡ଼ି ମଣ୍ଡପ ତଳେ ରହିଲା ଦେଶ ।
ଯେତେ ବା ପ୍ରସ୍ତାବ ଲହରୀ ଉଠିଥିଲା ମନରେ
ଘର ନ ଧରୁଣୁ କୁଆଡ଼େ ଶୁଖିଗଲା ବାଟରେ ।"

ତା ପୂର୍ବ ବର୍ଷ ବାଲେଶ୍ୱରରେ ,ସମ୍ମିଳନୀ ବସିଥିଳ । ବାଲେଶ୍ୱର-ବାସୀମାନେ ଖୁବ୍ ଆଗ୍ରହରେ ଏହାର ପରିଚାଳନା କରିଥିଲେ । "ଜଳ୍ପନା-କଳ୍ପନା ଚନ୍ଦ୍ରମା ସମ" ବୃଦ୍ଧ ଫକୀରମୋହନ ଅତି ଦୁର୍ବଳ ହୋଇଥିଲେ ସୁଦ୍ଧା କେଉଁ ନବ ଉତ୍ସାହ ଓ ପ୍ରଫୁଲ୍ଲତା ପ୍ରକାଶ କରିଥିଲେ, " ବକ୍ତୃତା ଯେପରି ଗାନପୁତ୍ର " ନାମରେ ପ୍ରସିଦ୍ଧ ବିଶ୍ୱନାଥ କର କିପରି ଏଠାରେ ଅନୁପସ୍ଥିତ ରହି ସମସ୍ତଙ୍କୁ ଚକିତ କରିଥିଲେ, ତାହା ସୁନ୍ଦର ସରସ ଭାବରେ କବି ବର୍ଣ୍ଣନା କରିଛନ୍ତି । ଏହାପରି ଓଡ଼ିଶାର ବିଭିନ୍ନ ସ୍ଥାନରେ ସମ୍ମିଳନୀ ବସେ । କିନ୍ତୁ ସର୍ବତ୍ର କେବଳ ବକ୍ତୃତାର ପରାକାଷ୍ଠା ପ୍ରଦର୍ଶିତ ହୁଏ ।

"କର୍ମବୀର ସବୁ ଗୋଟିକି ଗୋଟି ଧୁରନ୍ଧର
କି ଶ୍ଳାଘ୍ୟ ମନୁଷ୍ୟ, ଦେବଙ୍କୁ ଡର ନାହିଁ ତାଙ୍କର ।
'ଜାମବେଳକୁ ତ ସମସ୍ତେ ଅଛି ବୁକୁ ଭାଇ
ନାମ ଖୋଜୁଅଛ ଗୁଣ୍ଡାଙ୍କୁ ନାମ ମିଳିବ କାହିଁ ?
ଉଠ ହେଉଁ କୁହାକୁହରେ ଯେବେ ଉଠିବ ଦେଶ
ମାଙ୍କଡ଼ ହୋଇମା ସକଳ କଥା ହେବଟି ଶେଷ ।"

ଏହାପରି ଭାବରେ କବି କର୍ମବୀର ବାକ୍‌ପଟୁମାନଙ୍କ ଉପରେ ବିଶେଷ ବିରକ୍ତ ହୋଇ ସମସ୍ତେ ମାଙ୍କଡ଼ ହୋଇଗଲେ ମଙ୍ଗଳ ହେବ ବୋଲି ବ୍ୟଙ୍ଗ କରିଛନ୍ତି । ମଧୁସୂଦନ ଭାଇ ଭାଇ ବୋଲି ଡାକି ସମସ୍ତଙ୍କୁ ସ୍ୱାର୍ଥମେଧ-ଯଜ୍ଞ ପାଇଁ ଆହ୍ୱାନ କରିଥିଲେ । କିନ୍ତୁ ଭାଇ ଭାଇ ଡାକିବାରେ ଆନ୍ତରିକତା ନାହିଁ କି ସ୍ୱାର୍ଥ ତ୍ୟାଗ କରିବାର ଲେଶମାତ୍ର ସଙ୍କେତ ନାହିଁ । ତେଣୁ କବି " ଭାଇ ଭାଇ ଡାକ "ରେ ଗାଇଛନ୍ତି—

"ଭାଇ ଭାଇ ଏବେ ସଭାରେ ରହୁଛୁ
ଭାଇ ଡାକ ଅଛୁ ଶ୍ରେଷ୍ଠ ବେଳକୁ
ଭାମ ସରଗଲେ ଭାଇ ଡାକ ଗଲା
ଭାଇଯାକ ଗଡ଼ ଯା'ନ୍ତୁ ତଳକୁ ।"

ପ୍ରକୃତ ଜାତିପ୍ରେମ ବର୍ତ୍ତମାନ ବିଲୟ ଭଜନ୍ତୁ । ଭାଇ ଭାଇ ମଧ୍ୟରେ ସେ ମଧୁର ସମ୍ପର୍କ ଓ ଆନ୍ତରିକତା ନାହିଁ । ବର୍ତ୍ତମାନ ଅନେକ ନେତାଙ୍କର ଜାତୀୟ ଭାବ ମହାଭାରତୀୟ ପ୍ରେମରେ ପର୍ଯ୍ୟବଶିତ ହୋଇଛୁ ଏବଂ ନିଜ ଭାଇଙ୍କର ସୁଖ ଦୁଃଖ ପ୍ରତି ଲକ୍ଷ୍ୟ ନ ରଖି ଅନ୍ୟ ପ୍ରଦେଶର ଲୋକମାନଙ୍କୁ ସମସ୍ତ ସୁବିଧା ସୁଯୋଗ ଦିଆଯାଉଛୁ । ଏହି ମହାଭାରତୀୟ ପ୍ରେମକୁ କବି ସୁନ୍ଦର ଭାବରେ ବ୍ୟଙ୍ଗ କରିଛନ୍ତି । ତାହା ନିମ୍ନୋକ୍ତ ଉଦାହରଣରୁ ସ୍ପଷ୍ଟ ହେବ ।

"ଆମ ଭାଇ ଭାବ ତେଣିକି ଅଛି ସୀମା
ମାଡ଼ିଗଲାଣି ତ ଦୂର ଦୂରକୁ
କାଲେ କେ ଖୁଣିବ ଆମ ଉଦାରତା
ତେବେ ଗୃହ ନାହିଁ ଆମେ ଘରକୁ ।
ଦୂର ଅତିଥିଙ୍କ ସେବା ପାଇଁ ସିନା
ଭାଇଙ୍କ ଗୋଡରେ ପକାଉ ଭାଗ
ଆପଣା ଭାଇଙ୍କୁ ପଛକୁ ପକାଇ
ଅତିଥିଙ୍କ ମୂର୍ତ୍ତି ସମ୍ମୁଖ ଆଗ ।"

ସ୍ମରଣ କବି ବର୍ତ୍ତମାନର ତଥାକଥିତ ଉଦାର ଜନ୍ମଙ୍କ ଜାତୀୟ ଭାବକୁ ବିଦ୍ରୂପ କରିବା ସଙ୍ଗେ ସ୍ୱାଧୀନ ଦେଶରେ କପରି ଦେଶବାସୀମାନେ ପ୍ରକୃତ ସ୍ୱାଧୀନତା ଓ ଭ୍ରାତୃପ୍ରେମ ଉପଭୋଗ

କରିପାରୁ ନାହାନ୍ତି, ତାହା ଦେଖାଇଛନ୍ତି । ନୈସର୍ଗିକ ଭ୍ରାତୃପ୍ରେମ ଜାତିକୁ ଉନ୍ନତ ଓ ସମୃଦ୍ଧ କରି ତୋଳିବ, ଏହା କବିଙ୍କର ଅନ୍ତିମ ନିର୍ଦ୍ଦେଶ ।

ସେହିପରି କବି "ମହନ୍ତ ମହାରାଜ" କହିତାଟିରେ ମଠ ମହନ୍ତଙ୍କ ବିଳାସ ବାସନା ଲାଳସାକୁ ଆକ୍ଷେପ କରି ହାସ୍ୟରସର ଫୁଆରା ଛୁଟାଇଛନ୍ତି । ଭଗବାନଙ୍କୁ ଗୁହାରି କରିବା ମାଧ୍ୟମରେ କବି ମହନ୍ତର ବୀଭତ୍ସ କାର୍ଯ୍ୟକଳାପକୁ ଅଭିବ୍ୟକ୍ତ କରିଛନ୍ତି ।

"ଥରେ ଖାଲି ବସିଗଲେ ମୁଁ ମଠ ଗାଦିରେ ମାଡ଼ି
ମୋ ବାଟ ମୁଁ ବଳେ ଛାଡ଼ନ୍ତି ହେଲେ ତୁମକୁ ଛାଡ଼ି ।
ମହନ୍ତପଣରେ ଶିରପାଖଣ୍ଡି ଶିରେ ଗୁଡ଼ାଇ
ଫୋପାଡ଼ ଦଅନ୍ତି ଅଣ୍ଟାରୁ କଉପୁନୀ ଫିଟାଇ ।
ଛନା ରାଇଜରେ କହନ୍ତେ ମହାରାଜା ସକଳେ
ଧର୍ମ ନେତା ବୋଲି ଯଉନ୍ତେ ଆସି ମୋ ଗୋଡ଼ତଳେ ।" ଇତ୍ୟାଦି

କବି "ମୋ କରଣି"ରେ ସେହିପରି ମ୍ୟୁନିସିପାଲିଟିର ଅନ୍ଧ ବୁଝାମଣା ନୀତି, ବିଶୃଙ୍ଖଳ ଓ ଅଯୌକ୍ତିକର ନିୟମକାନୁନ ପ୍ରତି ବ୍ୟଙ୍ଗ କରିଛନ୍ତି । ନଗରବାସୀଙ୍କ ଉଦାସ ଗୁଣ ଯୋଗୁଁ କିପରି ସେମାନେ ନିଜ ଅଧିକାରରୁ ବଞ୍ଚିତ ହେଉଛନ୍ତି ଏବଂ ଏପରି ଏଡାଦାଡ଼ି ସହୁଛନ୍ତି, କବି ଏଥିରେ ବର୍ଣ୍ଣନା କରିଛନ୍ତି । ନଗରପାଳଙ୍କ ଉକ୍ତି ରୂପରେ କବି କହିଛନ୍ତି –

"ଭଙ୍ଗା କୁଡ଼ିଆରେ ଶୁଅ ବସ ପଛେ
ପକ୍କା କୋଠା ପାଇଖାନା
ନ ଭଲେ, ସହର ମଧ୍ୟରେ ନିବାସ
କରି ଦଅନ୍ତି ମୁଁ ମନା ।

ଗୋଡ଼ରେ ନ ଚାଲି ହାତରେ ଚାଲନ୍ତେ
ବାଟଟି ରହନ୍ତା ଭଲ,
ଗାଡ଼ି ଘୋଡ଼ା ସବୁ ଶୂନ୍ୟରେ ଉଡ଼ନ୍ତେ
ନ ଛୁଅନ୍ତେ କେବେ ସ୍ଥଳ ।"

ଏହିପରି ଭାବରେ ମ୍ୟୁନିସିପାଲିଟିର ଏଜମୁଖୀ ଶାସନ ନୀତିକୁ ସ୍ୱାଧୀନଚେତା ଭିକାରୀଚରଣ ତୀବ୍ର ବିଦ୍ରୂପ କରିଛନ୍ତି ।

ଆମର ସୂକ୍ଷ୍ମଦ୍ରଷ୍ଟା କବି ସମାଜରେ ପୂରି ରହିଥିବା ଦୋଷ ଦୁର୍ନୀତି ପ୍ରତି ସୁଦକ୍ଷ ଶଲ୍ୟଚିକିତ୍ସକ ପରି ଅସ୍ତ୍ରୋପଚାର କରିଛନ୍ତି । ପ୍ରତ୍ୟେକ ଶ୍ରେଣୀ ଓ ଗୋଷ୍ଠୀର ଦୋଷ ତ୍ରୁଟିକୁ ସେ ସମାଲୋଚନା କରିଛନ୍ତି । କବି ବିଶେଷତଃ ନିଜ କରଣ ଜାତିର ରୋଗକୁ ଏପରି ଭାବରେ ଚିତ୍ର ଦେଇଛନ୍ତି ଯେ, ଏପରି ନିନ୍ଦା କରିଛନ୍ତି ଯେ, ଏହା କେବଳ ନିରପେକ୍ଷ ଓ ସତ୍ୟଦର୍ଶୀଠାରୁହିଁ ଆଶା କରାଯାଇ ପାରେ । ଖ୍ରୀ: ୧୯୧୫ ରେ ପ୍ରକାଶିତ " କରଣ ସାଆନ୍ତ ତପ " ପୁସ୍ତିକାଟି ତତ୍କାଳୀନ ସମାଜରେ ଚମକ ସୃଷ୍ଟି କରିଥିଲା । କରଣମାନଙ୍କ ବାହ୍ୟାଡ଼ମ୍ବର ତଥା ତପସ୍ୟାକୁ ଏପରି ଭାବରେ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି ଯେ, ତାହା ସେତେବେଳେ ଅନେକ ଲୋକଙ୍କ ମୁଖରେ ମଧ୍ୟ ପ୍ରକାଶିତ ହେଉଥିଲା । ସତ୍ୟସନ୍ଧ ମଧୁସୂଦନ ମଧ୍ୟ ଏଥିରୁ ଅନେକ ପଦ ମନେରଖି ମନ ଆନନ୍ଦରେ ଆବୃତ୍ତି କରୁଥିଲେ । ଏହାର ସରସ, ସାବଲୀଳ ଭାଷାଶୈଳୀ ଓ ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା, ସର୍ବୋପରି ହାସ୍ୟରସ ପରିବେଷଣ ଅତୀବ ଉପଭୋଗ୍ୟ ଓ ମନୋଜ୍ଞ । କବି ଆରମ୍ଭ କରିଛନ୍ତି—

"ସାହାନ୍ତ ଘରର ତପ
ଉଖୁଡ଼ା ହାଣ୍ଡିକି ଛ'ଅଣା ଭଜଉ, ଗୋଟିଏ କୋଡ଼ିଏ କମ ।"

ଅର୍ଥାତ୍ ଅତ୍ୟନ୍ତ କ୍ଷୁଦ୍ର, ବସ୍ତୁରେ ମଧ୍ୟ କବିଙ୍କ ସ୍ୱୀୟ ଶିଳ୍ପପାଟବ ଓ ସୌନ୍ଦର୍ଯ୍ୟଜ୍ଞାନ ପ୍ରକାଶ ପାଏ । କିନ୍ତୁ ସେ ଯୁଗର ଶଯ୍ୟାଘରେ ଠାଟ ସଜାଡ଼ିବାକୁ ଯାଇ କପଟ ଚଭିକ ସ୍ଥାନରୁ ଅଳଙ୍କାର ମାଗି କାମ ଚଳାଏ, ଝିଅଟିଏ ଶଶୁଘରେ ଆଡ଼ମ୍ବର ଦେଖାଇ କପଟ ସର୍ବସ୍ୱାନ୍ତ ହୁଏ, ତାହା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ଝିଅଟିଏ ମା'ର ନେହକ
ଧନଦଳିତ ସକଳ ସରଳ
ମଣିଷପଣରୁ ଗଲା ।
ବଢ଼ ରାପ ନୋହେ ମାନ
ଚୂଲି ମୂଳ ଶକ ଚଣ୍ଡାଇ ଦେଇଛୁ
କେତେ ଫୁଲ କେତେ ବାଣ ।"

ଏମ୍ଭିପରି ବାହ୍ୟାଡ଼ମ୍ବରକୁ କବି ବ୍ୟଙ୍ଗ କରିଛନ୍ତି, ତା'ପରେ କାଳିର "କଟଣ୍ଣେଇ ଛନାରୁ ଦାନ୍ତଖୁଣ୍ଟାମାଏ" ଯାତଣ ଥାନ ହୋଇ ତାଲିକାରେ ହିସାବ ହୁଏ ଏବଂ ହିକଏ ହିକଏ କଥାରେ କଳହ ଓ ଫିଙ୍ଗାଫୋପଡ଼ା ହୁଏ, ତାହା ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି ।

"କଳିଆ ନ କଲ ଯେହୁ
ସାଆନ୍ତ ପଣରେ ଅସିଲେ କ ହେବ
ନ ଅସିଲା ପରି ସେହୁ ।"

ଅଥବା କଳହରେ ପଟୁତା ଦେଖାଇ ଶେଷରେ କପଟ ସମସ୍ତେ ମେଳକରେ ଛଟପଟ ହୁଅନ୍ତି ଏବଂ କନ୍ୟାପିତା ସର୍ବସ୍ୱାନ୍ତ ହୋଇ ମଧ୍ୟ ଦୋଷୀ ସାବ୍ୟସ୍ତ ହୁଏ, ତାହା ସରସ ଭାବରେ କହଯାଇଛନ୍ତି । ପୁଣି—

"କରଣ ଘରର ଝିଅ
ଯାହାକୁ ଧରି ସେ ଦଣ୍ଡେ ନ ବାହୁନେ
ଫାଟିଯାଏ ତା'ର ମୁଣ୍ଡି ।"

ବାପା ମା'ଙ୍କ ଠାରୁ ଆରମ୍ଭ କରି ମାମୁଁ ମାଇଁ ଲେଖା ଯୋଖା ଯେତେ ଥାନ୍ତି, ସମସ୍ତଙ୍କ ନାମ ଧରି ତାକୁ କାନ୍ଦିବାକୁ ପଡ଼ିବ । ଅସଭ୍ୟ ଘରେ ଅସଭ୍ୟ କାନ୍ଦନ ରେଳ ଷ୍ଟେସନ ପର୍ଯ୍ୟନ୍ତ ଚାଲିଥାଏ । ବିଚରା ସରଳା କୁମାରୀ ପାଇଁ ଏହା ଏକ ଯନ୍ତ୍ରଣାଦାୟକ ଅନୁଭୂତି ।

"ଜେଜେ ସ୍ୱର ତାନମାନ
ଯୋଡ଼ ବାହୁନଲେ ଝିଅ ସଙ୍ଗେ ବସି
ଅପା, ଖୁଡ଼ୀ ବଡ଼ ସାନ ।

ଶ୍ରେଣୀକୁ କରଣ ତଥା ଓଡ଼ିଆ ଘରର ସ୍ତ୍ରୀମାନେ ଖୁବ୍ ନିଷ୍ଠାର ସହିତ ଗୋଟିଏ ପବିତ୍ର ଅନୁଷ୍ଠାନ ପରି ପାଳନ କରିଥାନ୍ତି । ତା'ପରେ ଆଉ ଏକ ବଡ଼ ଲଜ୍ଜାର କଥା ଯେ,—

"ମହନ୍ତ ଘରର ପୁଅ
ଗଲବେଳେ ଚୈହିସ ମଣିଣା କାଟିଲେ, ଭାଙ୍ଗିଦେଲେ କାହିଁ ପୁଅ ।

କାହିଁ ଯେ ପାଇଲେ ଯାହା
ରେଙ୍ଗରକଲେ ଦବୁ କାଲେ ନ ରହିବ, ବରଜାତଙ୍କର ନାହିଁ ।"

ଏହି କାର୍ଯ୍ୟକୁ ଏମାନେ ଗୋଟିଏ ଶାସ୍ତ୍ରଗତ କର୍ତ୍ତବ୍ୟ ବୋଲି ପାଳନ କରିଥାନ୍ତି । ଏହାଠାରୁ ବଳି ନିର୍ବୋଧତା ଆଉ କ'ଣ ଥାଇପାରେ । କେଉଁ କାରଣ ଜାତି ଜାତି ମାନସମ୍ମାନ ପାଇଁ ଟିକେ ଅନୁଭବ କରନ୍ତି ସେମାନଙ୍କ କାର୍ଯ୍ୟ ଓ ଅବସ୍ଥା କଳନା କେଉଁ

ମହତ୍ତ୍ୱ ଗୁଣର ପରିଚାୟକ ? କବି ପ୍ରଶ୍ନ କରନ୍ତି ଏବଂ ଏଥିପ୍ରତି ତାଙ୍କ ବିଦ୍ରୂପ କରିଛନ୍ତି ।

"ରଙ୍ଗ ମାନ ଯୋଡ଼ଯାଇ
କଳଙ୍କ ଅରେ ଅନନ୍ଦ ଟାହାର, ତା କୃଷି ଶକ୍ତି ଖାଜ ।"

ଆଧୁନିକ ଶିକ୍ଷିତବର୍ଗଙ୍କୁ କବି ଯୌତୁକ ପ୍ରଥା ସମ୍ପର୍କରେ ନିଜର ମର୍ମବାଣୀ ଶୁଣାଇଛନ୍ତି । ସଭ୍ୟଶିକ୍ଷିତମାନେ ଅନ୍ୟ ସମୟରେ ଯୌତୁକ ପ୍ରଥା ବିରୁଦ୍ଧରେ ଖୁବ୍ ଉଚ୍ଚ ତତ୍ତ୍ୱମାନ ବଖାଣି ନିଜ ବେଳେ ଯୌତୁକ ପାଇଁ ମୂର୍ଖଭଳି ଅଡ଼ି ବସନ୍ତି; ସେମାନଙ୍କୁ ଏକ "ସଉଦା ପରିବା ବିକାକଣା" ପରି ବ୍ୟବହାର କରନ୍ତି । ଏହା ଜାତ୍ ପରମ୍ପରାର ବିଷୟ ନୁହେଁ । ସଂସ୍କାରଜନ୍ୟ କବି ଜାତିକୁ ଏହିସବୁ କୁ-ସଂସ୍କାର ଓ ଅନ୍ଧବିଶ୍ୱାସକୁ ଅଚିରେ ଅପସାରଣ କରିବାକୁ ଆହ୍ୱାନ ଜଣାଇଛନ୍ତି । ନଚେତ୍ ଜାତିର ଉନ୍ନତି ସୁଦୂର ପରାହତ । କବି ତେଣୁ ଭାବାବେଗରେ ( Imotionally ) ଗାଇଛନ୍ତି ।

"କମାଇ ବସିଛ ଗୃହୀ
ବୁଢ଼ାଗଲେ ନାହା                    ତଳା ଧରିଥିବ
ଖୋଜିଲେ ମିଳିବ ନାହିଁ ।

ଏତିକ ଯେଉଁଠି ଆଜ
ବେଲତାଳ ବୁଝି                    ପୁଣି ଦେଖାଦେବ,
ନାହିଁ ମୋ ମୁହିଁକୁ ଲାଜ ।"

ବାସ୍ତବରେ ନିଜ ଘର ନିଆଁ ବୋଲି ଅଣ୍ଟିରେ ନ ପୁରାଇ, ସେ ତାଙ୍କୁ ନିଜର ସ୍ୱାଧୀନ ଚିନ୍ତା ଓ ମୌଳିକ ପ୍ରତିଭା ସାହାଯ୍ୟରେ

ପରକ୍ଷିତନ୍ତି । ଏହାଙ୍କୁ ପଢ଼ି ତତ୍କାଳୀନ ଓଡ଼ିଶାର ସୁପରିଚିତ ବ୍ୟକ୍ତି ସ୍ୱର୍ଗୀୟ ସୁଦାମ ଚରଣ ନାୟକ ଭିକାରି ଚରଣଙ୍କୁ ଦେଖି ପଚାରିଥିଲେ—"ଆଜ କେବେ ଦେଖା ଦେବ ?" ଏହାର ଉତ୍ତରରେ କବି "ସାଆନ୍ତାଣୀ ବାହା" ବୋଲି ଆଉ ଏକ ପୁସ୍ତିକା ଲେଖିଥିଲେ । ଏଥିରେ ମଧ୍ୟ ସେହିପରି ସତ୍ୟଦ୍ରଷ୍ଟା ଲେଖକ କରଣ କୁଳର ଅର୍ଥ ଆଡ଼ମ୍ବର ଓ ମୂର୍ଖତାକୁ କଟାକ୍ଷପାତ କରିଛନ୍ତି । ସେ ସାଆନ୍ତାଣୀଙ୍କର ଚାଲକୁ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ଦରବା ଝଣ୍ଡିକ ସାନ ଗାଳ ପିଆ
ଘରେ ସିନା ପିନ୍ଧା ହେବ
ପୀତାମ୍ବର ପାଟ ଦାଣ୍ଡକୁ ନ ଥିଲେ
କାଲେ କେହି ବାହୁଡ଼େବ !

ପାଦରେ ନୂପୁର କରି ରଣଝଣ
ଧରଣୀ କମ୍ପେ ଚଳନ
ଘରେ ତିନ ଓଳି ଚୂଲି ଜଳା ନାହିଁ
ଏହା କେ ପରତେ ଯିବ ?"

ଭିକାରି ଚରଣ ଏଥିରେ ମଧ୍ୟ ଗୋଟିଏ ଚିତ୍ରଧରର ସୁନ୍ଦର, ସରସ ଓ ବାସ୍ତବ ଚିତ୍ର ରୂପାୟନ କରିଛନ୍ତି । ସେହିପରି ଏଠାରେ ସେ ତୀବ୍ର ସମାଲୋଚନା କରିଛନ୍ତି, କରଣ ଗୃହଧରର ଅନେକ ବାହ୍ୟାଡ଼ମ୍ବର ଓ ଅବାଞ୍ଛନୀୟ କାର୍ଯ୍ୟାନୁଷ୍ଠାନକୁ । ସେ ଏକ ସ୍ଥାନରେ କହିଛନ୍ତି—

"ତ୍ରିବୋଧ ଜସ୍ତବ ମଙ୍ଗଳ ବାର୍ତ୍ତାରେ
ଙ୍କେ ଢ଼ଳଢ଼ଳ ପଥ।
କଳ କଳଅଛି ସେହ୍ନ ପନ୍ଦକାରେ
ନ ହେଲେ ନ ଚଳେ କଥା।"

କପଟ ପୌତ୍ତଳ ଦାବୀ ଓ ବାହ୍ୟାଡ଼ମ୍ବରର କୁପରିଣତି ଫଳେ, ତାହା ଲେଖିବାକୁ ମଧ୍ୟ ବଡ଼ ଭୁଲ ନାହାନ୍ତି। ନଜର ଅଣଦେଖା ପଣ ଓ କର୍ମଦୋଷରୁ କପଟ ପରେ ଦୁଃଖକଷ୍ଟ ଭୋଗ କରିବାକୁ ହୁଏ, ତାହା ବର୍ଣ୍ଣନା କରି ଲେଖକ ଏବଂ ଶେଷରେ ନାଙ୍କୁ ସାବଧାନ କରାଇଛନ୍ତି।

"ହାତଯୋଡ଼ି ଧାଇ କହୁଅଛି ମୁହିଁ
ଗଡ଼ ଏ ଶୃଙ୍ଖଳ ମାନ,
ଦେଖିଚ୍ଛି ଏବେ ସେ ଦଃଟକାଳ ଗତ
କେବେ ହୁଅ ସାବଧାନ।"

ଅବଶ୍ୟ ଆଜକାଲି କରୁଣ କୁଳରୁ ଓଲିଗଲ ଅନେକ ଦୋଷ ଓ କୁସଂସ୍କାର ଉଠିଯାଇଛି। କିନ୍ତୁ ଅତୀତର ଏହି ସବୁ କଥା ଅନେକ ସମୟରେ ଅଶ୍ରୁଳ ସ୍ମାରକୀ ହୋଇ ରହିଥାଏ।

କବି ନିଜେ ଜଣେ ଓକିଲ ଥିଲେ ମଧ୍ୟ ଓକିଲଙ୍କର ଏପରି ତୀବ୍ର ସମାଲୋଚନା କରିଛନ୍ତି, ଯାହା କେହି ଏହା ଜାଣିଲେ ବିସ୍ମିତ ହେବ। ଏପରି ଆତ୍ମସମାଲୋଚନା (self-criticism) କରିବା ସାଧାରଣ ବ୍ୟକ୍ତିଙ୍କ ପକ୍ଷରେ ଅସମ୍ଭବ। ବାସ୍ତବରେ ସେ "ଅବସାଦ ବାଣୀ"ରେ ନିଜର ମର୍ମବାଣୀ ଶୁଣାଇଛନ୍ତି।

"ଲୁଚାଇ ନାହିଁ ମୁଁ ଆପଣା ଦୋଷ
ପର କଥା କେତେ ଦାଣ୍ଡରେ ବାଢ଼ିଛି
ଆପେ ପଢ଼ିଲେ ମୋ ବଢ଼ଇ ରୋଷ।"

ବୁଦ୍ଧିଜୀବୀ ଓକିଲମାନେ କପଟ, ଅର୍ଥ କେନ୍ଦ୍ରରେ ନଜର ଦେଇ ଓ ମର୍ଯ୍ୟାଦା ଅନେକ ସମୟରେ ହରାଇ ବସନ୍ତି, ତାହା ସରସ ହାସ୍ୟରସ ଓ ବ୍ୟଙ୍ଗୋକ୍ତି ମଧ୍ୟରେ କବି "ଓକିଲ" ଶୀର୍ଷକ ଏକ ମନୋଜ୍ଞ କବିତା ମାଧ୍ୟମରେ ପ୍ରକାଶ କରିଛନ୍ତି ।

"ଆମେ ତ ଓକିଲ ଭାଇ
ଆମର ପରିଖା ବୁଝିଆ ନାହିଁ
ଆଉ ନ ଦେଖିବ କାହିଁ ।

ବଣିଜ ଆମର କଥା
କଥାଟି କହିଲେ ଟଙ୍କାଟି ଲୋଡ଼ିବୁ
ନ ହେଲେ ନ ଚଳେ ପଥା ।

ଦେଖ ହତ ଅମ ବାହ୍ମା
ତୋ ଘର ବୁଡ଼ିବ ତା' ଘର ବୁଡ଼ିବ
ମୋ ଘର ବଢ଼ିଲେ ଅଚ୍ଛା ।"

ଆତ୍ମମଙ୍ଗଳ ଓ ସ୍ୱାର୍ଥପରତା କିପରି ସେମାନଙ୍କୁ ପ୍ରଭାବିତ କରେ, ତାହା ଏଥିରେ ସ୍ପଷ୍ଟ ହୋଇଛି । ବ୍ୟବହାର-ଜୀବୀମାନେ ଅର୍ଥ ଲୋଭ ପାଇଁ ନ୍ୟାୟକୁ ଅନ୍ୟାୟ ବୋଲି, ଆଉ ଭୁଲ୍‌କୁ ଠିକ ବୋଲି ଓ ଠିକ୍‌କୁ ଭୁଲ ବୋଲି ପ୍ରମାଣ କରନ୍ତି ଏହାକୁ ବ୍ୟଙ୍ଗ କରି କବି ଗାଇଛନ୍ତି—

"କଳାକୁ କରିବୁ ଧଳା
ପାଣିକୁ କହିବୁ ଜଳନ୍ତା ନିଆଁ ଟା
ମୁହିଁ ଖଣ୍ଡେ ଢେଳ ନାଳା ।

ଝିଙ୍କା ହେଲେ ଭଲକର
ମୂଷା ଯାକ ରଢ଼ି          ହାତୀ ହୋଇଛନ୍ତି
ଫିଙ୍ଗାଇ ଦେବୁ ନକର ।"

କବି ଏଠା ଶାତସାମୂଳ ଜାମୁନ ନିଷ ଦେବା ସଙ୍ଗେ ସଙ୍ଗେ ସୁନ୍ଦର, ସଜୀବ ରୂପକ ଓ ତୁଳନା ସାହାଯ୍ୟରେ ଏହି କବିତାଟିକୁ ଅତି ହୃଦୟଗ୍ରାହୀ ଓ ଉପଭୋଗ୍ୟ କରି ତୋଳିଛନ୍ତି । ବିଶେଷ ଦୃଷ୍ଟାନ୍ତ ଦେବାର ଲୋଭ ସମ୍ବରଣ କରିନ ପାରି ତଳେ ଆଉ କେତୋଟି ପଦ ଦେଉଛୁ ।

କାଳିତ ଆମର ତୁଣ୍ଡ
ନଗଦା ନଗଦ          ସଉଦା ପଟର
ପସରା ଆମର ମୁଣ୍ଡ ।
ବାରନାରୀ ଅମ୍ଭ ପିଠ
ଓଇଁନି ସଜାଡ଼ି          ଦୁହେଁ ଜଗି ବସୁ
ଦୁହେଁ ଘଲ୍ଲୁ ଚରିତ୍ର ।
ପ୍ରଭେଦ ଏତିକ ଖାଲି
ଯୁବତୀ ବୟସେ          ଆଦର ତାଙ୍କର
ବୁଢ଼ା ହେଲେ ଅମ୍ଭ ପାଳି ।"

କି ସୁନ୍ଦର ଉପମା ଓ ତୁଳନା ! କି ସରସ ଓ ତୀକ୍ଷ୍ଣ ବ୍ୟଙ୍ଗ ବିଦ୍ରୂପ !!

ଓକିଲମାନେ କପଟ୍ରେ " ମାମଲା ବଢ଼ାଇ ଦେଇ " ହାରିଲା-ବେଲକୁ "ହାକିମ ଅବୁଝା" ବୋଲି କହି ନିଜର ଦାୟିତ୍ୱ ତୁଟାଇ ଦେଇଥାନ୍ତି, କପଟ୍ରେ ପଇସା ନ ଥିଲେ ସୁଦ୍ଧା, ଆଡ଼ମ୍ବର ଦେଖାଇ

ଭଟେଗୀରେ ଚଳପ୍ରଚଳ ହୁଅନ୍ତି, ତାହା ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛନ୍ତି ।

"ସ୍ୱାଧୀନ ବେପାର ଲକ୍ଷ୍ମୀ
ଲତୁଡ଼ା ପାଇଲେ          ଦଉଡ଼ ଦଉଡ଼
ହରବର ହୋଇ ମରୁଁ । × ×
ଆମ ପାଖେ ଯେ ଧାଇଁବ
ଧନ ପଛେ ପଛେ          ସବୁ ସୁଖ ଶାନ୍ତି
ହସାଇ ଘରକୁ ଯିବ ।"

ଓକିଲତିକୁ ସ୍ୱାଧୀନ-ବୃତ୍ତି ବୋଲି କହୁଲେ ସୁଦ୍ଧା ଏଥିରେ କପଟ ଅନେକ ପ୍ରକାରରେ ସେମାନଙ୍କୁ ହରବର ଓ ଗ୍ଲାନିକର ହେବାକୁ ପଡ଼େ, ତାହା ହାସ୍ୟରସିକ କବି ସାବଲାଲ ୨ ନାଟ୍ୟୀକ ଭାବରେ ପ୍ରକାଶ କରିଛନ୍ତି ।

ବିଦେଶୀ ଶାସନ କାଳରେ ବ୍ରିଟିଶ ଶାସକଗଣ ଏ ଦେଶରେ ନିଜ ସାମ୍ରାଜ୍ୟର ମୂଳଭିତ୍ତି ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଗୋଟିଏ ଅନ୍ତଃସାରଶୂନ୍ୟ ଶିକ୍ଷା ପଦ୍ଧତି ପ୍ରଚଳନ କଲେ । ୧୮୩୫ ମସିହାରେ ତତ୍କାଳୀନ ଆଇନମନ୍ତ୍ରୀ ଓ ଶିକ୍ଷାବିଭାଗର ମୁଖ୍ୟ ଲର୍ଡ ମ୍ୟାକଲେ ଥରେ ମନ୍ତବ୍ୟ ଦେଇଥିଲେ ଯେ, ଭାରତୀୟମାନଙ୍କୁ ଇଂରେଜ ରୁଚି, ମତ ଓ ବୁଦ୍ଧି ବୃତ୍ତିରେ ଦୀକ୍ଷିତ କରିବା ଏହି ଶିକ୍ଷା ପଦ୍ଧତିର ପ୍ରକୃତ ଲକ୍ଷ୍ୟ (The real object was to create a class of persons, Indians in blood and colour, but English in taste, in openions, in morals and in intellect) । ଏହିପରି ସାଂସ୍କୃତିକ ଆକ୍ରମଣ କରିବା (Cultural Invasion) ତାଙ୍କର ସଫଳ ହେଲା, ଯେତେବେଳେ ଇଂରେଜ

ଶିକ୍ଷିତ ଯୁବକମାନେ ସମସ୍ତେ ଗୃହକର୍ମ କଳସା, ବାହ୍ୟାଡ଼ମ୍ବର ଓ ଜାତୀୟତାବିରୋଧୀ ସ୍ୱଭାବରେ ଆକ୍ରାନ୍ତ ହେଲେ । ଜାତୀୟ ସଂସ୍କୃତି ଓ ସଭ୍ୟତା ଧ୍ୱଂସ ଆଡ଼କୁ ଆଗେଇ ଚାଲିବାର ଦେଖି ଗୃହଣକର ଜ୍ୱାଳାମୟ ବରଣ ତାଙ୍କର ପ୍ରାୟ ପ୍ରତ୍ୟେକ କବିତାରେ ବ୍ୟଙ୍ଗ ଭିତ୍ତିକ ଅନ୍ତଃକେଷଣ କରିବା ସଙ୍ଗେ ସଙ୍ଗେ ଯୁଗୋପଯୋଗୀ ଚେତାବନୀ ଶୁଣାଇଛନ୍ତି । 'ନତ ମୂଳିଆ'ରେ ସେ ସ୍ୱାଧୀନ ମୂଳିଆର ଗୌରବ ଗାନ କରିବା ସାଥେ ସାଥେ ପରାଧୀନ ଗୃହକରିଆର ଶାରୀରିକ ଅବସାଦ ଓ ମାନସିକ ଅଶାନ୍ତି ବର୍ଣ୍ଣନା କରିଛନ୍ତି । ମୂଳିଆ ମୂଲ୍ ଲାଗି ମୂଲ୍ ନାଏ । କବି ପାଠ ପଢ଼ି ତୋଷାମୋଦ କରେ ନାହିଁ ।

"ଲାଭ ଧନ୍ଦୁ ଧନ୍ଦୁ ଅନ୍ତ ଗୁଡ଼ୁ ଗୁଡ଼ୁ
ଗୃହକରିଆ ପ୍ରାଣେ ଦୁଃଖ,
ଖଟି ସାରି ଆମ ପ୍ରଗାଢ଼ ନିଦଟି
ଆମ୍ଭଙ୍କୁ ପରମ ସୁଖ ।
ହଜାର ହସୁଛ ନାକଟିଳ ପରି
ତାଳେ ତ ହରଷ ନାହିଁ,
ଆମ ହସଯାକ ପେଟରୁ ଫୁଟୁଛି
ସରସରେ ପୂରିଥାଇ ।"

ଏହିପରି ପରସ୍ପରର ଅବସ୍ଥା ସୁନ୍ଦର, ସରଳ ଓ ସରସ ଭାବରେ ତୁଳନା କରି ଶିକ୍ଷିତର ଚୈତନ୍ୟୋଦୟ ପାଇଁ ଚେଷ୍ଟା କରିଛନ୍ତି । ଗୃହକର୍ମ ନ କରି ସ୍ୱାଧୀନବୃତ୍ତି ଅବଲମ୍ବନ କରିବା ପାଇଁ ତାଙ୍କର ଏହା ମର୍ମବାଣୀ । ପରାଧୀନ ଦେଶରେ ତାଙ୍କର ଏହି ଉପଦେଶର ମୂଲ୍ୟ କମ୍ ନ ଥିଲା ।

ସେତେବେଳେ ଅର୍ଦ୍ଧଶିକ୍ଷିତ ଓ ଅଳ୍ପଶିକ୍ଷିତ ବେକାର ସଂଖ୍ୟା ଯଥେଷ୍ଟ ଥିଲ । ଏହି ସମୟରୁ ପ୍ରାୟ ପ୍ରତ୍ୟେକ ଶିକ୍ଷାକମିଶନର ରିପୋର୍ଟରେ ଆମେ ଶିକ୍ଷିତ ବେକାରଙ୍କ ସମସ୍ୟା ସମ୍ବନ୍ଧରେ ଅନେକ କଥା ଦେଖୁ । କିନ୍ତୁ ପାଠ ପଢ଼ି ଯୁବକମାନେ ନିଜର ପାରିବାରିକ କୃଷି ଓ ବ୍ୟବସାୟ ପ୍ରତି ବୀତସ୍ପୃହ ହୋଇ ଯାଉଥିଲେ ଏବଂ ଚାକିରି ଅନ୍ୱେଷଣରେ ବାର ଦୁଆର ଶୁଣ୍ଢି ପିଣ୍ଡା ହେଉଥିଲେ । ଏହି ଅବସ୍ଥା ଓ ଗତିବିଧିକୁ ଲକ୍ଷ୍ୟ କରି କବି 'ବି. ଏ. ପାସ', 'ଶାମ ଦାସ' 'କର୍ମ ଖାଲି , 'ବିଲୁଆ, କୁକୁର', 'କାଳ ଶାଗୁଣା', 'ଓଡ଼ିଆ ଭାଇ', 'ନୂଆ ସହରର ଖେଳ', 'ଅସ୍ଥାୟୀ ମୂଲକ'; 'ହାକମ ହୁଅନ୍ତି' ପ୍ରଭୃତି ଅନେକ କବିତାରେ ବ୍ୟଙ୍ଗାତ୍ମକ (Satirical) ସମାଲୋଚନା କରିଛନ୍ତି । ବି. ଏ. ପାସ୍ କବିତାଟି ତତ୍କାଳୀନ ବେକାର ସମସ୍ୟାର ଏକ ଜ୍ୱଳନ୍ତ ଚିତ୍ର । ଶିକ୍ଷିତ ଯୁବକ କେତେ ଆକାଶୀ ଆଶା ପୋଷଣ କରି ଶେଷକୁ ଚାକିରି ନ ପାଇ ବେକାର ହୁଏ । କେତେ ତୋଷାମୋଦ କରି କେତେ ହତାଦର ହୋଇ ନିରାଶ ହୁଏ । ସେ ଦେଖେ, "ନିତ ମଜୁରିଆଙ୍କର, ଗୋଡ଼ତଳେ ଆସି ପଡ଼ଇ ଡାକରା, ଆହୁରି କେତେ ଆଦର × × ×

"ବଡ଼ହେଇ କମାରଗଣ, ଶାଳ ବେଣ୍ଟକରେ ଠୁକୁଛୁ ଠୁକୁଛୁ
ଧାଉଁଛନ୍ତି ପଣ ପଣ ।"

"ଦାସଙ୍କ ଷ୍ଟେସନେରି ଯାଇ, ଦେଖିଲି ସେଠାରେ ମୋଟା
ସିଜିଁଛନ୍ତି କିରାଣୀ ମୋଟା ଭାଇ"

ଏତେବେଳେ ଯୁବକର ଚେତା ପଶିଛି । ସେ ଭାବୁଛି—

"ହାତ ଚଳାଇଲେ ଭାତ
ହାତ ବୋଝ୍ଆ କରି    ଜାକି ବସିଥିଲେ
ଯହିଁ ଯିବ ତହିଁ ତାତ !
ଗୃହସ୍ଥ ଯୋଗାଜମି ଗିସ୍ତ
ଦରିଦ୍ର ଏହେନ    ଭୁଲିଲେ ବୁଢ଼ିର
ଦେଶ ଶିକ୍ଷା, କାହିଁ ଭିକ୍ଷା ।"
ଶିଳ୍ପ ବାଣିଜ୍ୟରେ ମନ
ଦେଖିଲେ ନିଶ୍ଚୟ    ବସି ନିଜ ଘରେ
ଗଣିବା ହାତରେ ଧନ ।'

ଏହିପରି ପ୍ରତ୍ୟେକ କବିତାରେ ଶିକ୍ଷିତ ଯୁବକମାନଙ୍କ ପାଇଁ ଶିଳ୍ପ ବାଣିଜ୍ୟ ଓ କୃଷି ପ୍ରତି ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ତାଙ୍କର ଆହ୍ୱାନ ଅଭିପ୍ରେତ ।

ସେହିପରି "ବାମ ଦାସ"ରେ କବି ଦେଖାଇଛନ୍ତି, କପରି ପୂର୍ବେ ଆମର ପୂର୍ବ ପୁରୁଷ ସୁସ୍ଥ ସବଳ ରହି କାର୍ଯ୍ୟ କରି ସୁନାର ଫସଲରେ ଦେଶକୁ ହସାଇଥିଲେ । "ଡାକ ଦେଲେ ଭୂଇଁ ବୋଲ ମାନୁଥିଲା, ଡାକୁଥିଲା ଫଳ ଫୁଲ ।" କିନ୍ତୁ ଜମି ଟିକି ବାପ ପାଠ ପଢ଼ାଇଲେ । ଯୋଗ୍ୟ ପୁଅ ନିଜର ରୁଚି ମତରେ ଅଭ୍ୟସ୍ତ ହୋଇ ବାବୁଗିରି ଦେଖାଇଲେ, ମାତ୍ର ବର୍ତ୍ତମାନ ବି. ଏ. ପାଶ କରି ବେକାର । କେତେ ଆଶା ଅଭିଲାଷ କୁଆଡ଼େ ଉଡ଼ିଗଲା । କବି ବ୍ୟଙ୍ଗ କରି କହୁଛନ୍ତି—

"ଛୁଆ ବାବୁଟିରି ଯେତେ ଶିଖିଥିଲା
ଛାଡ଼ିବା ପାଇଁକି ମନ,
ମୁଁ ଛାଡ଼ିଲେ କଣ ହେବ ସେ'ତ ମୋତେ
ନ ଛାଡ଼ନ୍ତି କଦାଚନ ।

ବହୁ ଘୋଷି ଘୋଷି ବି. ଏ. ଏମ୍. ଏ. ହେଲେ
ନ ମିଳିବ ସୁଖ ଶାନ୍ତି,
ସମସ୍ତେ ଝୁରୁଛ ଡେପୁଟି ହୋଇବ
ସେ ଭାବନା ବୃଥା ଭ୍ରାନ୍ତି ।”

କୃଷି କର୍ମ, ବାଣିଜ୍ୟ ଓ ଶିଳ୍ପ କାର୍ଯ୍ୟ ପ୍ରଭୃତି ସ୍ୱାଧୀନ ବୃତ୍ତି ଅବଲମ୍ବନ କଲେ—

‘ନିଜେ ହେବ ସୁଖୀ, ସୁଖୀ ହେବ ଦେଶ, ବଢ଼ିବ ଦେଶର ଶିରୀ,
ଘୁଞ୍ଚିବ ଉତ୍କଳ ମାତାଙ୍କ ଦୁର୍ଦ୍ଦଶା, ଲଭିବ ଅଧମଗିରି ।’

ବର୍ତ୍ତମାନ ମଧ୍ୟ ଏହି କବିତାର ମୂଲ୍ୟ କମ୍ ନୁହେଁ । ‘ବିଲୁଆ କୁକୁର’, ‘କାଉ ଶାଗୁଣା’ ଏହି ଦୁଇଟି କବିତାରେ ସୁନ୍ଦର ରୂପକ ସାହାଯ୍ୟରେ ଚାକିରିଆଙ୍କର ଦୁର୍ଦ୍ଦଶା ବର୍ଣ୍ଣନା କରିଛନ୍ତି । ହାସ୍ୟରସ ସଙ୍ଗେ ବ୍ୟଙ୍ଗବିଦ୍ରୂପ ଅତ୍ୟନ୍ତ ମର୍ମଭେଦୀ । ପରାଙ୍ଗପୁଷ୍ଟ ଦୁଇଟି ଜୀବ କାଉ ଓ ଶାଗୁଣା ଶବାହାର ପାଇଁ କଳହ କରି ଶେଷରେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

“ଭୁଞ୍ଜା ମଢ଼ା ସେବା ଘୁଢ଼ ଦେବାପାଇଁ
ନୁହେଁ ବସି କର ପଣ,
ସୁଖରେ ଶାନ୍ତିରେ ବନ୍ଧୁତା ପ୍ରେମରେ
କଟାଇଦେବା ଜୀବନ ।”

ହୀନ କାର୍ଯ୍ୟ ପାଇଁ ଉଚ୍ଚ ଶିକ୍ଷିତମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ଓ କଳହ ଦେଖି କବି ଏହି ବିଦ୍ରୂପ କରିଛନ୍ତି । ଏଠାରେ କବିଙ୍କର ବ୍ୟଙ୍ଗ ବାଣ କି ଶାଣିତ ! କି ମର୍ମଭେଦୀ ! !

ସୂକ୍ଷ୍ମଦ୍ରଷ୍ଟା ଭିକାରୀଚରଣ ବିଦେଶୀ ଶାସିତ ଓଡ଼ିଶା ଆର୍ଥିକ ତତ୍କାଳୀନ ଭାରତର ଶିକ୍ଷିତ ବେକାର ସମସ୍ୟା ସମ୍ପର୍କରେ ଯେପରି ନିଖୁଣ ଚିତ୍ର ତାଙ୍କର କୃତିଗୁଡ଼ିକରେ ଦେଇଛନ୍ତି, ତାହା ଅନ୍ୟତ୍ର ଦୁର୍ଲ୍ଲଭ । ସେତେବେଳେ ଜାତିର ଆଶା ଅଭିଳାଷ, ସୁଖ ଦୁଃଖ ସହ ଯୋଗସୂତ୍ର ତୁଟାଇ ଏହି ଆଧୁନିକ ଶିକ୍ଷିତମାନେ ଇଂରେଜୀ ମମତାରେ କିପରି ନିଜର ମୌଳିକତା, ବୁଦ୍ଧି ବିବେକ ଓ ଆତ୍ମମର୍ଯ୍ୟାଦା ହରାଇ ବସିଲେ, କିପରି ଜାତିର ବିକାଶ ନ ହୋଇ ବିନାଶର ସୂତ୍ରପାତ ହେଲା, ପୁରପଲ୍ଲୀର ସରଳ, ପାରମ୍ପରିକ ବୃତ୍ତି ବ୍ୟବସାୟରେ କିପରି ଆସିଲା ଅନେକ ଝଡ଼, ବିଶୃଙ୍ଖଳା, ତାହା ଭିକାରୀଚରଣ ପୁଙ୍ଖାନୁପୁଙ୍ଖ ଭାବରେ ବର୍ଣ୍ଣନା କରିଛନ୍ତି । "ଆଜି ଆମ ଦେଶ" ( ୧୯୪୦ ମସିହାରେ ) ଇଂରେଜୀରେ କିପରି ଆକ୍ରାନ୍ତ ହୋଇଥିଲା, ତାହା ତାଙ୍କର ନିମ୍ନଲିଖିତ ବିଦ୍ରୂପାତ୍ମକ ପଦ୍ୟାଂଶରୁ ଅନୁମିତ ହେବ ।

"ଇଂରେଜୀ ଆଯାକ ଉଠିଲେ ବଣ ମଲ୍ଲିଙ୍ଗ ପରି,
ମିଠାରସ ଶୋଷି ଗଛରୁ ଗଲେ ସହଜେ ଝରି । × ×
ଇଂରେଜୀ ଇଂରେଜୀ ଭଜିଲେ ସବୁ ହୋଇ ବାଉଳ,
ଜାତି କୁଳ ବୁଦ୍ଧି ପାସୋରି କଲେ ଇଂରେଜୀ ମୂଳ ।× ×

ତା'ପରେ ବିଦେଶୀ ଶାସନର ଶେଷ ଭାଗରେ ଗୋଟିଏ ନୂଆ ଇଂରେଜୀ ଉଦ୍ଭବ ହେଲା । ସେଥିରେ ସାଧାରଣ ଇଂରେଜୀ ପରି ନିର୍ଦ୍ଦିଷ୍ଟ ଦରମା ନ ଥିଲା । କିନ୍ତୁ ମାନ ସମ୍ମାନ ଢେର୍ ଅଧିକ । ଏହି ଇଂରେଜୀ ପ୍ରତି ଧନୀ ମାନୀ ବିଶେଷ ଲାଳାୟିତ ଓ ଆକୃଷ୍ଟ ହେଲେ । ସେମାନଙ୍କ ଭିତରେ ପ୍ରତିଯୋଗିତା ଭୀଷଣ ରୂପ ଧାରଣ କଲା । ବିଭିନ୍ନ ଅନୀତି ଓ ଦୁର୍ନୀତି ସମାଜରେ ଅନୁପ୍ରବିଷ୍ଟ ହେଲା ।

ସେମାନେ ନିଜ ନିଜର ଅବ୍ୟବସ୍ଥିତ ଶକ୍ତି ସାମର୍ଥ୍ୟକୁ ବହୁଗୁଣିତ କରି ପ୍ରଚାର କରନ୍ତି ଓ କରାନ୍ତି; ନିଜେ ମାତ ମହୁଆଳ ହୁଅନ୍ତି ଏବଂ ଅନ୍ୟମାନଙ୍କୁ କଳେ ବଳେ କୌଶଳେ ଅକ୍ତିଆର କରନ୍ତି । ଏହି ଗୃହସ୍ତ ହେଉଛନ୍ତି ମ୍ୟୁନିସିପାଲିଟି ଓ ଜିଲାବୋର୍ଡ଼ର ଚେୟାରମ୍ୟାନ ଓ କାଉନସିଲରଙ୍କର । ଏଥିପାଇଁ ସେଠା ଭିକାରୀ ଚରଣଙ୍କର ଭ୍ରୂକୁଟି ବିକ୍ଷେପ ଓ ନାସିକା କୁଞ୍ଚନ କମ୍ ନୁହେଁ । ସେ ଗାଇଛନ୍ତି,

“ବିନା ବେତନରେ ଗୃହସ୍ତ ଚେତେବେ
ହୋଇଲା ସୃଷ୍ଟି,
ଥିଲେ ଲୋକ ସବୁ ଧାଇଁଲେ ତାଙ୍କ
ପଡ଼ିଲା ଦୃଷ୍ଟି ।

× × × × ଥରେ ଥରେ ତାହାଁ ଧାଇଁକି
ଲଗେ ହୋଇ ସୁନାଧ
ଦେଶସାକ କର୍ମିଭାବରେ
ହୋଇ ଚେତେ ତାହାଧ
କେତେ ଲୋକ ମାତିଉଠନ୍ତି
ଲଗେ ଚେତେ ଭୂଆଣ,
କହିଲେ ସରିବ ନାହିଁ ତ
ଏଥି ସେହି ପୁରାଣ ।
ଘରୁ ଧନ କାଢ଼ି ଯେ ଯେତେ
ଆଣି ଦାନ୍ତେ ଛିଅନ୍ତି,
କାହାକୁ ମଜା କାହାକୁ
ସାମ୍ନି ଭଲ ଡାକନ୍ତି ।”

ଏହିସବୁ କବିତା ପଢ଼ିଲେ କବିବର ରାଧାନାଥଙ୍କ ‘ଦରବାର’ କବିତା ସ୍ୱତଃ ମନେପଡ଼େ । ଏଥିରେ ଥିବା ବ୍ୟଙ୍ଗ ବିଦ୍ରୁ

"ଦରବାର"ରେ ରାଜା ଜମିଦାର, ଧନୀ ମାନୀ ପ୍ରଭୃତିଙ୍କ ଉପାଧି-ପ୍ରୀତି ପ୍ରତି କରାଯାଇଥିବା ବିଦ୍ରୂପାତ୍ମକ ମନ୍ତବ୍ୟଠାରୁ କୌଣସି-ଗୁଣରେ ନ୍ୟୂନ ନୁହେଁ । ଏହା କବି ସେତେବେଳେ ଭୋଟ ପରେ ଦେଶବାସୀମାନଙ୍କ ଆଗରେ ନିର୍ବାଚନ ପ୍ରଥାର ଗୁରୁତ୍ୱ, ଦୋଷ ତ୍ରୁଟି ବର୍ଣ୍ଣନା କରି ଗାଇ ବୁଲୁଥିଲେ । ଏକ ପଇସା ଦୁଇ ପଇସା ଠାରୁ ଆରମ୍ଭ କରି ଅଧିକ ମୂଲ୍ୟର ପୁସ୍ତିକା "ଭୋଟ" "ଭୋଟ ଭିକାରୀ" "ନେତା" ପ୍ରଭୃତି ସେ ନିର୍ବାଚନ ସମୟରେ ଲେଖି ପ୍ରକାଶ କରୁଥିଲେ । ସେଥିରେ ନିଜର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ସିଦ୍ଧି ଆଶା ନ ଥିଲା । ସେ ଇଚ୍ଛା କରିଥିଲେ ବିଭିନ୍ନ ସାଧାରଣ ସଂସ୍ଥାଗୁଡ଼ିକରେ ଅନାୟାସରେ ସଭ୍ୟ ହୋଇପାରିଥାନ୍ତେ । କାରଣ ନିଜର ସେତେବେଳେ ବିପୁଳ ଲୋକପ୍ରିୟତା ଥିଲା; ଅନେକଙ୍କ ଅନୁରୋଧ ସତ୍ତ୍ୱେ ସେସବୁ କ୍ଷମତା ଓ ସମ୍ମାନରେ ଜଳାଞ୍ଜଳି ଦେଇଥିଲେ । ସେ ଉତ୍କଳ ସାହିତ୍ୟ ପ୍ରେସରୁ ପ୍ରକାଶିତ ଏକ ପଇସା ମୂଲ୍ୟର ଏକ ପୁସ୍ତିକାରେ କବିରି ଗୋଟିଏ ବାସ୍ତବର ଚିତ୍ର-ରୂପାୟନ କରିଛନ୍ତି, ତାହାର କିୟଦଂଶ ନିମ୍ନରେ ଦେଖନ୍ତୁ ।

"ଥରକୁ ଥର ତ ଏହିପରି,
କେତେ ହାତ ଗୋଡ଼ ଧରାଧରି ।
ଭୋଟ କି ଭଣ୍ଡାମି ବୋଲି ନ ପଚାରି
ଭୋଟ ଗଣାଗଣି ଗଲେ ସରି ।

ନିଜ ହାତେ ଅଧିକାର ଥାଇ
ଚଳାଇ ନ ଜାଣି ନିଜେ ଭାଇ
ନିଜ ଗାଲେ ନିଜ ଚଟକଣା ଖାଇ
ଗୁହାରି କରିବା କାହିଁ ପାଇଁ ?"

ପରାଧୀନ ଦେଶରେ ଦେଇଥିବା ଏହି ଉପଦେଶ ଓ ନିର୍ଦ୍ଦେଶ ଆଜି ମଧ୍ୟ ସ୍ୱାଧୀନ ଦେଶରେ ଅକ୍ଷରେ ଅକ୍ଷରେ ସତ୍ୟ । ଦୁଇ ପଇସା ମୂଲ୍ୟର "ଶ୍ରେଷ୍ଠ ଉପାୟ"କୁ ଗୋଟିଏ ଅଧ୍ୟାତ୍ମିକ, ନିଷ୍ପେଷିତ ଜାତିର ଅନ୍ତର୍ଦାହର ଜୀବନ୍ତ ପଟୋଣ୍ଟୁଠନ ବୋଲି କହିବାକୁ ହେବ । ଯେତେବେଳେ ଜମିଦାରର ଚକ୍ରାନ୍ତରେ, ସାହୁମହାଜନର ଋଣ ଜାଲରେ, ପୋଲିସ ଦାରୁଗାର ଧମକ ଚମକରେ, ମେଲେରିଆ ମହାମାରୀ ପ୍ରଭୃତି ବିଭିନ୍ନ ରୋଗ ଯନ୍ତ୍ରଣାରେ ଦେଶବାସୀମାନେ ନିଷ୍ପ୍ରାଣ, ନିଷ୍ପ୍ରଭ ଓ ମ୍ରିୟମାଣ ହୋଇଛନ୍ତି, ସେତେବେଳେ ଏହି ନିର୍ବାଚନ-ପ୍ରହସନ ଶ୍ରବଣ କବିଙ୍କ ହୃଦୟରେ ବିଦ୍ରୋହର ଦାବ-ଦାହ ସୃଷ୍ଟି କରିଛି । ସେ ସରଳ, ସାବଲୀଳ ଓ ମର୍ମସ୍ପର୍ଶୀ ଭାଷା ଓ ଶୈଳୀରେ ରୂପ ଦେଇଛନ୍ତି; ସହସ୍ର ସହସ୍ର ହୃଦୟର କଥାକୁ—

"ଆମେ ତ ଗଲୁଣି ସରି
ଦାନା ଲାଗି କାନ୍ଦି          ଲାଗି ଝୁରି ଝୁରି
ବହିବୁ ମରି ନ ମରି । × × ×
ଜାଲି ପାଗ ଦେଖି ଡରୁଁ
ଗାଆଁରେ ପଶିଲ          ଦାରୁଗା ଶୁଣିଲେ
ହଟାଣ୍ଡ କମ୍ପେ ଦେହୁଁ
ଜମିଦାର ମହାଜନ,
ପ୍ରବଳ ପ୍ରତାପୀ          ଯମଠାରୁ ବଳି
ଜାଣୁ ଏହି ଦୁଇ ଜଣ ।"

ଏହି ସମୟରେ "ଶ୍ରେଷ୍ଠ ଲୀଳା" ଲାଗିଛି, "କେତେ କୌତୁକ" ଲାଗିଛି । ଜଣକ ପରେ ଜଣେ ଆସି ଶ୍ରେଷ୍ଠ ସକାଶେ "ଦୁଆରେ ମୁଣ୍ଡିରେ ଧାରଣା ଦେଲେଣି ।" ଦେଖି କବି ଜନତାର

ପ୍ରଗତିଧର୍ମୀ କବି ଖରକ୍ତ ହୋଇ ଚଢ଼ୁଛନ୍ତି, ଏହି ଶ୍ରେଷ୍ଠ ଭିକାରୀମାନଙ୍କ ଗୃହବାଣୀରେ ।

"ଧନେ ନାହିଁ କାଳେ ନାହିଁ
ଟଙ୍କେ ସୁହାଗରେ ଡାକ ଛାଡ଼ୁଛନ୍ତି
ଆରେ ଖାଇ ଆରେ ଖାଇ ।
ଶୁଣି ସେ ଉଠିଆ ଡାକ,
ଅଙ୍ଗେ ଅଙ୍ଗେ ହାଡ଼ ଜଳି ଯାଉଅଛି
କଏ ସେ ହୋ ଏଗୁଡ଼ାକ ।"

ତା'ପରେ ବନ୍ଦିନୀ ଦଳର ସ୍ୱପ୍ନର ଓ ଶ୍ରମିକଙ୍କୁ କଣ୍ଠ ସମାଲୋଚନା କରିବା ସଙ୍ଗେ ସଙ୍ଗେ ନିର୍ମାଣର ପଥ ନିର୍ଦ୍ଦେଶ କରୁଛନ୍ତି ଏବଂ ସେ ଆଜିକାଲିର ପୋଷଲବ୍ଧମାନଙ୍କ ପର ଶ୍ରେଷ୍ଠଦାତାମାନଙ୍କୁ ଶ୍ରେଷ୍ଠ ଅଧିକାରକୁ ବଞ୍ଚିତ ହେବାକୁ ନ କହି ଗଠନମୂଳକ ପରାମର୍ଶ ଦେଉଛନ୍ତି ।

"ଦେଖ କେଉଁଠାଇ କାମ
କାମ ଯେ କରିବ ଆସ ଦାମ କର
ନ ଖୋଜ ପଦାକୁ ନାମ । × × ×
ଧନ-ଜନ-ମନଯୋଗ
ଏକ ମେଳ ହେଲେ ଉଠିଯିବ ଦେଶ
ହଟିଯିବ ସବୁ ରୋଗ । × × ×
ଶ୍ରେଷ୍ଠ ହେବାକୁ ତ ହେବ
କଏ କେଉଁ ଦଳ ନ ଭାବୁଥା ତୁମେ
ଯୋଗ୍ୟ ଲୋକ ଦେଖି ଦେବ ।"

ସ୍ୱାଧୀନତା ଆନ୍ଦୋଳନ ହେଲବେଳେ ଦେଶରେ ନେତୃତ୍ୱ ପାଇଁ ତୀବ୍ର ପ୍ରତିଯୋଗିତା ଆରମ୍ଭ ହୋଇଥିଲ । ଦେଶ ସେବା ନାମରେ ଅମ୍ଳ ସେତାଙ୍କୁ ମୂଳ ହେଲ "ଦରବାର"ରେ ଯେପରି କବି ରାଧାନାଥ ଉପାଧି ଲାଭ ପାଇଁ ପୋଲିସଠାରୁ ଆରମ୍ଭ କରି ରାଜା ଜମିଦାର ପର୍ଯ୍ୟନ୍ତ ସକଳ ଅସାର ଆଡ଼ମ୍ବର ଓ ଅହମିକା ପର୍ଯ୍ୟନ୍ତ ନଜର ଅସାର ଆଡ଼ମ୍ବର ଓ ଅହମିକା ପ୍ରଦର୍ଶନର ଗୋଟିଏ ସରସ ବର୍ଣ୍ଣନା ଦେଇଛନ୍ତି, ଭିକାରୀ ଚରଣ ସେହିପରି "ନେତା" ଶୀର୍ଷକ ଏକ ପୁସ୍ତିକାରେ ନେତୃତ୍ୱ ପାଇଁ ଉଚ୍ଚ ଶିକ୍ଷିତ, ଧନୀ ଜମିଦାର, ସାମ୍ବାଦିକ, ବକ୍ତା, ମହାଜନ, ଓକିଲ, ଅବସରପ୍ରାପ୍ତ ରାଜ କର୍ମଚାରୀ, ମହନ୍ତ ପ୍ରଭୃତି ଲୋକମାନଙ୍କ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଓ ଦାହାଦୁଙ୍କୁ ବିଦ୍ରୂପାତ୍ମକ କଟାକ୍ଷପାତ କରିଛନ୍ତି । ଏହି ଦୁଇଟି ରଚନାରେ ସୁନ୍ଦର ସାମଞ୍ଜସ୍ୟ ପରିଦୃଷ୍ଟ ହୁଏ । କିନ୍ତୁ ଭିକାରୀ ଚରଣଙ୍କର ସାବଲୀଳ ଶୈଳୀ ସରଳ ଭାଷା ଓ ସରସ ବ୍ୟଙ୍ଗବିଦ୍ରୂପ ଅତ୍ୟନ୍ତ ସ୍ୱକୀୟ ଓ ମନୋରମ । ଦୃଷ୍ଟାନ୍ତ ସ୍ୱରୂପ କେତେକଣଙ୍କର ଉକ୍ତି ନଆଯାଇପାରେ ।

ନେତା ନେତା ବୋଲି ସମସ୍ତେ କହନ୍ତି କିଏ ନେତା
କେ ତା' ଚହ୍ନିବ,
ନେତା ନେତା କରି ନେତା ଫାଟୁଛନ୍ତି
କଣ୍ଠା ଧାକଳ କେ ଜାଣିବ ?
~~କେ~~ ବୋଲଇ ମୁହିଁ ଏମ୍. ଏ. ବି. ଏ. ଟିକି
ବାହାଧ ଅପିଲ ତୋକୁ,
ନେତା ହେବାପାଇଁ ଦାବୀ ହେଲ ମୋର
ଆଜି ମୁଁ [illegible]

କେ ବୋଲଇ ଦେଖ କୋଠାକୁ ମୋହର
ଅନା ମୋର ଗାଡ଼ି ଘୋଡ଼ାକୁ,
କେମନ୍ତ ଷ୍ଟାଇଲରେ ବାଳ ମୁଁ କାଟିଛୁ
ଗୁଣ୍ଡା ମୋର ଜାମା ଯୋଡ଼କୁ ।
କେହୁ ଡୋଲେ ମୁହିଁ ଲେଖିପାରେ
କାବ୍ୟ କବିତା ପ୍ରବନ୍ଧ ସୁନ୍ଦର,
କେତା ବୋଲି ମୋତେ ନ ମାନିବ
ଯେଦ୍ଧ କରିଦେବ ତାକୁ ବାହାର ।
କେହୁ ବୋଲେ ଗୋଷ୍ଠୀ ଭଲ ଓକିଲ
ମୁଁ ମକ୍କେଲ ମୋର ବହୁତ,
ଏତେ ଦମ୍ଭ କାର ନେତା ନୁହେଁ ବୋଲି
କିଏ ସେ କହିବ କହ ତ ? ଇତ୍ୟାଦି

ଏହିପରି ସମସ୍ତଙ୍କର ବାଗାଡ଼ାମ୍ବର ଓ ବାହ୍ୱାସ୍ଫୋଟ କବିଙ୍କୁ ଅତିଷ୍ଠ କରାଇଛି । ସେ ଦେଖିଛନ୍ତି ଏହାଦ୍ୱାରା ଜାତିର ପ୍ରଗତି ଅସମ୍ଭବ । ତେଣୁ ସେ ବ୍ୟଙ୍ଗ କରି କହୁଛନ୍ତି—

''ଡ଼ଙ୍କିଲ ଜନନୀ ନେତା-ପ୍ରସବିନୀ କେତେ
ନେତା ଗଢି ଫିଙ୍ଗୁଛି,
ନେତା ଗୋଲ ନେତା ସେଣ୍ଟରେ ତା ବୋଲ
କଲ କଲ୍ଲୋଳିତ କମ୍ପୁଛି ।
× × × ଯହିଁ ଦେଖ ତହିଁ ନେତା ପଣପଣ
ନେତାଗଣ ବଣ ବଢ଼ିଲା,
ତେବେ ବି ଡଙ୍କିଲ ମାତାଙ୍କ ନୟନୁ
ଲୋତକ ଧାର ନ ଶୁଖିଲା ।

ଯା’ ରକ୍ତ ବିଦାରେ ଶୋଷିଲ ଶୋଣିତ
ତା’ ଅଶ୍ରୁ ଯେବେ ନ ପୋଛୁ,
ତୋଡ଼ିଯାଉ ନେତାପଣ ସମସ୍ତଙ୍କ
ନେତା ନାମରୁ କି ଫଳିବ ?”

ଏହି ଅଗ୍ନେୟ ବାଣୀରେ ବିପ୍ଳବୀ କବି କାନ୍ତ ନେତାମାନଙ୍କୁ ଚେତାବନୀ ଶୁଣାଇଛନ୍ତି । ଏପରି ନେତାମାନଙ୍କ ଦେଶ ସେବା ମନୋବୃତ୍ତି ବି ଉଣା ନୁହେଁ ଏବଂ ପ୍ରାଣାନ୍ତକ ଚେଷ୍ଟା ବି କମ୍ ନୁହେଁ । ଦେଶର ଉନ୍ନତି ପାଇଁ ଏମାନଙ୍କ ଯୋଜନା ଓ କଳ୍ପନା ଅସୁମାରି । କିନ୍ତୁ କେବଳ ସମୟାଭାବରୁ ଏସବୁ କାର୍ଯ୍ୟକାରୀ ହୋଇପାରୁ ନାହିଁ ବୋଲି ଏହି କୁହାମୁଣ୍ଡା କପିଳାଙ୍କ ଦୁଃଖ । ଦେଶ ସେବା କଳ୍ପନାଟିରେ କବି ଗୋଟିଏ ନିଛକ ଚିତ୍ର ଦେଇଛନ୍ତି ।

“ଦେଶର ସେବକ ମୁଁ ଜଣେ ଝାଳ ଦେଶ ସେବାରେ,
ମନ-ପ୍ରାଣ ଢାଳି ଦେଇଛି ସଦା ଦେଶ ଚିନ୍ତାରେ ।
ଯେତେ ଯା କଳ୍ପନା କରୁଛି ଦେଶ ଉଦ୍ଧାର ପାଇଁ,
କାର୍ଯ୍ୟେ ପରିଣତ ହୋଉଛି ଅବସର ନ ପାଇ ।
ଟଙ୍କା ଦେଇ ଘଣ୍ଟା କିଣିଲି କେତେ କରି ଯତନ,
ସେ ପୁଣି ନ ଶୁଣେ ମୋ ବୋଲି କେଡ଼େ ଦମାକ୍ସି ପଣ ।”

ଏହି ନେତା ମହାଶୟ ଶେଯରୁ ଉଠୁ ଉଠୁ ଦିନ ଦ’ଘଣ୍ଟା ହୁଏ, ନିତ୍ୟକର୍ମ ସାରୁ ସାରୁ ଦୁଇ ପହର ହୁଏ । ଏହିପରି ସମୟ ଗଡ଼ି ଚାଲେ । ନିଜର କୁଅଭ୍ୟାସରେ ଓ ବିଭିନ୍ନ ପାରିବାରିକ ଜଞ୍ଜାଳରେ ସମୟ ବିତେ । କିନ୍ତୁ ଦେଶ ସେବା ପାଇଁ ମନଟା ଖାଲି ଛଟପଟ

ହୁଏ । ଅତଏବ ଅନେକଙ୍କୁ କେବଳ ମେ ସାଧୁ କାମନା (**Pious wishes**) ବ୍ୟର୍ଥ ହେଉଛନ୍ତି ।

"କାଳଟି ଚଞ୍ଚଳ ନ ହୋଇ ଯେବେ ସ୍ଥିର ରହନ୍ତା,
ତେବେ ଅବା ମୋତେ କେଜାଣି ଅବସର ମିଳନ୍ତା । × ×
ଉଠାଇ ଦିଅନ୍ତି ଦେଶକୁ ଦଶ ହାତ ଉପରେ,
ଦେଖିଲେ ଜାଣନ୍ତ କଥ ମୁଁ ରଖିଅଛି ମନରେ ।
ଦେଖର ଦୁର୍ଯୋଗ, ସୁଯୋଗ ଘଟୁ ନାହିଁ ତ ଭେବେ,
ଦେଶ ସେବାରେ ମୋ କି ଦୋଷ ଭାଇ କହିଲ ତେବେ ?"

ଏହାପରେ ନେତୃସ୍ଥାନୀୟ ଲୋକଥିବା ଦେଶବାସୀଙ୍କ ପ୍ରତି ତାଙ୍କର ବିଦ୍ରୂପାତ୍ମକ ସମାଲୋଚନା ଅତ୍ୟନ୍ତ ମର୍ମଭେଦୀ ଓ ଉପଭୋଗ୍ୟ । ବକ୍ରୋକ୍ତି ଓ ବ୍ୟଙ୍ଗୋକ୍ତିର ସୁଷମ ସମାବେଶରେ କବିତାଟି ସୁନ୍ଦର ଓ ସରସ ହୋଇଛି । ଦେଶର ଉନ୍ନତି ପାଇଁ କର୍ମବୀର ଆବଶ୍ୟକ । ବାକ୍ୟବୀରମାନଙ୍କ ସଂଖ୍ୟାବୃଦ୍ଧିରେ କିଛି ଲାଭ ଅଛି ନାହିଁ । ଆଜିକାଲି କଟକ ଦେଶରେ ନେତାମାନଙ୍କ ବାକ୍‌ପଟୁତା ବିଶେଷ ପରିମାଣରେ ପ୍ରକାଶିତ ହୁଏ ଏବଂ କାର୍ଯ୍ୟ କରିବାର ନିଷ୍ଠା ଓ ପ୍ରଚେଷ୍ଟା ନାହିଁ, ତାହା "କଟାକଳ" ଶୀର୍ଷକ ଏକ କବିତାରେ ସ୍ପଷ୍ଟଭାବରେ ଉଲ୍ଲେଖ କରି ସେମାନଙ୍କୁ ତୀବ୍ର ବ୍ୟଙ୍ଗ କରିଛନ୍ତି ।

"କାଟନା କାଟନା ଉତ୍କଳ-ମାତା ଗୋ !
ପୁଏ ସବୁ ଯୋଗ୍ୟ ହେଲେଣି,
ଦେଖି ବୁଝି ଥିବ କଥା କାରଖାନା
କେନେ କଏ ଖୋଲି ଦେଲେଣି ।

ପାଠ ପଢ଼୍ ପଢ଼୍ ଅନ୍ତ ଗୁଡ଼ୁଗୁଡ଼ୁ
ଚେଷ୍ଟା କେମ୍ବର ପୂରିବ
ପାଠ ନ ସରୁଣୁ ଧରନେଲ ବାଇ
ଭତ୍ୟଗିରି କାହୁଁ ମିଳିବା।
କଣାଅ ଜନନୀ ! ପ୍ରଭୁଙ୍କ ଚରଣେ
ସୁମତି ଏହାଙ୍କୁ ଦଅନ୍ତୁ,
କ୍ଷୁଦ୍ର ବୁଦ୍ଧି ଛାଡ଼ି ପେଟ ଲଗି ଅବେ
ବୈଶ୍ୟବୃତ୍ତି ସବେ ଧରନ୍ତୁ।"

ଶୃଙ୍ଖଳା ଜଳସା ଓ ବାଗାଡ଼ମ୍ବରକୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ କବି ଶିଳ୍ପ ବାଣିଜ୍ୟ ପ୍ରତି ସେମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି। ଆମର ଦୈନନ୍ଦିନ ଜୀବନକୁ ଦୁଷ୍ଟ କରୁଥିବା ଅନେକ ଦୁର୍ଗୁଣ ପ୍ରତି ସଂସ୍କାରଲକ୍ଷ୍ୟ କବି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି। 'ବଡ଼ଗୁଣ' ଶୀର୍ଷକ କବିତାଟି ଅତି ସରସ, ସୁତୀକ୍ଷ୍ଣ ଓ ବ୍ୟଙ୍ଗାତ୍ମକ। ଏହାର ସମସ୍ତ ପଦ ଅତ୍ୟନ୍ତ ଉପଭୋଗ୍ୟ ଓ ଆକର୍ଷଣୀୟ। ସେ ଲେଖିଛନ୍ତି—

"ବଡ଼ ହେବ ଯେବେ ଶୁଣ
ପ୍ରଥମରୁ ଶିଖି ରଖ ଗୋଟି ଗୋଟି ଯେତେ ଦାଦା ବଡ଼ଗୁଣ।
ଘରକୁ ନ ଥାଇ ଭତ
ଦାଣ୍ଡକୁ ରଖିବ ଜାଗା ଯୋଡ଼ା ଝଣ୍ଟି ହଲଇ ଗୃଲିବ ହାତ।
ଦୁନିଆଁ ଜାଣିବା ପାଇଁ
ନିତ ନିତ ଅବେ ଜାଗା ଉଣ୍ଡି ଉଣ୍ଡି ମୁଣ୍ଡିଆ ମାରିବ ଯାଇ।
ଖୁସାମଦ ବଡ଼ ଧନ
ଖୁସାମଦ ଯେବେ କର ଶିଖିଥିବ କିଣିପିବ ତ୍ରିଭୁବନ।

ଗତ କେତେକ ନବ୍ୟଙ୍କ କଥା
କେଉଁଠି ରହିଥିବ ସତ୍ୟ ସମିତିରେ ହାଙ୍କିବା ହଲଇ ମଥା ।''

ଏହାପରେ ପ୍ରତ୍ୟେକ ପଦ ଆଜିର ନେତୃମଣ୍ଡଳୀ ପ୍ରତି ଏକ ଅତ୍ୟର୍ଥ ଶର ସନ୍ଧାନ । ୧୯୧୮।୧୯୧୯ ମସିହାରେ ଲିଖିତ ଏହି କବିତାଗୁଡ଼ିକର ମହତ୍ତ୍ୱ ଓ ସତ୍ୟତା ଏବେ ମଧ୍ୟ ଅମଳିନ; ବରଂ ଅଧିକ ପ୍ରଯୁକ୍ତ ଓ ଯୁଗୋପଯୋଗୀ ।

ଆଜିର ବିଜ୍ଞାନ ଯୁଗରେ ମନୁଷ୍ୟ କିପରି ନିଜକୁ ସର୍ବଶକ୍ତିମାନ୍ ମନେକରି ଅହମିକା ଓ ଆତ୍ମପ୍ରେରିତିରେ ଲିପ୍ତ ରହୁଛି, ତାହା କବି ଭିକାରୀ ଚରଣ "ବିଧାତା ବିଦାୟ" ଓ "ଦୁନିଆଁ-ଦର୍ପଣ" ପ୍ରଭୃତି କେତୋଟି ବ୍ୟଙ୍ଗାତ୍ମକ କବିତାରେ ସରସଭାବରେ ବର୍ଣ୍ଣନା କରିଛନ୍ତି । ମନୁଷ୍ୟ ବିଜ୍ଞାନ ବଳରେ ବିଧାତାର ଅସ୍ତିତ୍ୱରେ ସନ୍ଦିହାନ ହେଉଛି; ଅହଂ ଭବରେ ବୁଡ଼ିରହି ସମସ୍ତ ଅନ୍ୟାୟ ଅତ୍ୟାଚାର ଓ ସ୍ୱାର୍ଥଲିପ୍ସାରେ ଜୀବନ ନିର୍ବାହ କରୁଛି । ସେ ଧର୍ମ ପ୍ରତି ଆସ୍ଥାହୀନ ହୋଇ ନାସ୍ତିକ ପାଲଟିଛି । 'ବିଧାତା ବିଦାୟ'ରେ କବି ବ୍ୟଙ୍ଗ କରି କହନ୍ତି—

"ଦୁଷ୍ଟ ଶିରେ ଶୋଭେ ସୁବର୍ଣ୍ଣ ମୁକୁଟ ଶିଷ୍ଟ ହାତେ ଲହାକଡ଼ି
ଦେଖିଲେ ବୁଝିବ କେମନ୍ତି ମନୁଷ୍ୟ ବିଧାତାକୁ ହେଲେ ଛଡ଼ି ।

× × ×

କେତେ ମହାବଳୀ ବିଧାତାକୁ ଠେଲି ଚମକ ଉଠିଲେ ଯହିଁ
ବିଧାତା ବିଚରା କନାକନ୍ଥା ନେଇ ଖୁଡ଼ି ପଳାଇଲା ତହିଁ ।"

ଦୁର୍ବଳ ଉପରେ ପ୍ରବଳର ଅତ୍ୟାଚାର ବଢ଼ି ଚାଲିଛି । ଅନ୍ୟାୟ ଅନୀତିର ସୀମା ରହୁନାହିଁ । "ଦୁନିଆ-ଫେର୍ମ"ରେ କବି ଦେଖାଇ ଅଛନ୍ତି—ସୃଷ୍ଟିରେ ଯୁଗାନ୍ତକାରୀ ପରିବର୍ତ୍ତନର ଆଶା ରଖି ଅନେକ ମଣିଷ ଉଚ୍ଛନ୍ନ ଓ ଉନ୍ମତ୍ତ ହୋଇ ଉଠୁଛନ୍ତି । କବି ଏହାକୁ ବ୍ୟଙ୍ଗ କରି କହୁଛନ୍ତି ଯେ, ଗୋଟିଏ ଦୁନିଆଁ ଫେର୍ମ ସଭା ଗଢ଼ି ଏହି ବିଜ୍ଞାନ-ବଳରେ ମହାବଳୀମାନେ ସମସ୍ତ ସୃଷ୍ଟି ଚକ୍ରକୁ ଅକ୍ତିଆରରେ ରଖିବାପାଇଁ ଚେଷ୍ଟା ଚଳାଇଛନ୍ତି ।

"ଏ ସଭା ଗଠନେ ନ ହେଲେ ଉପୂର ନ ଯିବ ଦୁଃଖ ଆମ୍ଭର
ଏବୁଦ୍ଧା ବଧାଡ଼ା ଥିବାଯାଏ କେତେ ହେଉଥିବା ହରବର ।"

"ନ ଦେଖିଲ ପୁଏ ଦେଖ" ଶୀର୍ଷକ କବିତାରେ କୁଟିଳୀ କବି ଦେଖାଇଛନ୍ତି, କପରି ଏସବୁ ଭାରଣକୁ ନିର୍ଗୁଣରେ ଆଦର ଓ ଗୁଣୀର ଅନାଦର ବଢ଼ିଛି । ନିଷ୍ଠେହ୍‌ତେତ, ରୈସ୍ୱଲ୍ୟର ଛାପ ବ୍ୟାପୁଛି, ନିର୍ଦ୍ଦୋଷ ଉପରେ ଅତ୍ୟାଚାର ଓ ଦୋଷୀ ପୁରସ୍କୃତ ହେଉଛି । କବି ନିଜର ସ୍ୱଚ୍ଛନ୍ଦ ତଥା ସରସ ଓ ସାବଲୀଳ ଗୀତରେ ଏହା ଲେଖିଛନ୍ତି—

"ପାଣିରେ ଲାଗଇ ଗାର ଆହା କି ସବୁ ବିଚାର
କହୁନି ପୁଅକୁ ହୁଅଛି କୁହାର, ସହୁନି ପୁଅକୁ ମାର
ଟଙ୍କା ଥିଲି ପୁଏ, ଲଙ୍କାକୁ ନ ଡରି, ନ ଥିଲି ପୁଅକୁ ଶଙ୍କା
ନେଲି ପୁଅଙ୍କର ଦାଉ, ଦେଲି ପୁଅ ନେଉଆଉ,
ଅଦଆ ପୁଅକୁ କେହୁ ନ ମାଗନ୍ତୁ ଖୁସିରେ ବସି ବସି ଖାଉ ।"

ଏହିସବୁ ମନ୍ତବ୍ୟର ଗୁରୁତ୍ୱ ଓ ଅର୍ଥ ଅନେ[illegible]
ବୁଝାଇବାକୁ ପଡ଼ିବ ନାହିଁ । କାରଣ ଏହା [illegible]

କଥା, କୁଟିଳ ସଂସାରର ଶକ୍ତ ଅନୁଭୂତ । ସେଥିପରେ ନାସ୍ତିକମାନଙ୍କୁ ଛାଡ଼ିଦେଲେ; ଆସ୍ତିକ ଯେଉଁ କେତେକଜଣ ଅଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଭଗବାନଙ୍କ ନାମରେ, ଧର୍ମର ଛଳନା କରି ବଞ୍ଚିଲା ଦୁର୍ନୀତି ଦୁଷ୍କୃତରେ କିପରି ନିମଜ୍ଜିତ, ତାହା ବ୍ୟଙ୍ଗପଟୁ କବି ଭିକାରି ଚରଣ "ହରି ହରି ବୋଲ", "ଗୋବିନ୍ଦ ବୋଲ" ନାମକ ଦୁଇଟି କବିତାରେ ସରଳ ଓ ସରସ ରୂପରେ ରୂପାୟନ କରିଛନ୍ତି ।

ଅତୀତର ଗୌରବ ପାଇଁ କେବଳ ଗର୍ବ ଅନୁଭବ କରିବା ବୃଥା । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ଗୌରବାବହ ଓ ସମୃଦ୍ଧ ଥିଲେ ବି ନାଟ୍ୟକଳା ଓ ସାହିତ୍ୟ ରହିଲେ ଓଡ଼ିଆ ପୁଅର ଭୋକିଲା ପେଟ ପୂରିଯିବ ନାହିଁ । ଏଥି ଅପାର ବଢ଼ିମା ଓ ଆତ୍ମଶ୍ଳାଘାକୁ ସତ୍ୟାନୁବ୍ରତୀ ଓ ସ୍ୱାଧୀନଚେତା ଭିକାରି ଚରଣ ତୀବ୍ର ସମାଲୋଚନା କରିଛନ୍ତି, ତାଙ୍କର 'ଶୋଇଥା ଶୋଇଥା', 'ଦେଖୁଥା ଦେଖୁଥା', 'ଗଣୁଥା ବସି', 'ବଢ଼ୁଥା ବଢ଼ୁଥା' ପ୍ରଭୃତି ବିଦ୍ରୂପାତ୍ମକ କବିତା ମାଧ୍ୟମରେ । କବି 'ଶୋଇଥା ଶୋଇଥା'ରେ ବ୍ୟଙ୍ଗ କରି ଗାଇଛନ୍ତି—

"ଓଡ଼ିଆ ପୁଅଙ୍କ ଓଡ଼ିଆ କପାଳ ଜଗତେ ତ ନ ଥିବ କାହିଁ
ସୂର୍ଯ୍ୟ ପରି ତାଙ୍କ ସୁନାମର ପ୍ରଭା, ସମସ୍ତେ ଦେଖିବେ ଚାହିଁ ।
ମିଛ ଆମ୍ବଗଛେ ମିଛେ ଆମ୍ବ ଫଳେ ମିଛେ ମିଛେ ଆମ୍ବ ପାଚେ
ମିଛେ ମିଛେ ତୋଳି ମିଛେ ମିଛେ ଖାଇ ଓଡ଼ିଆ ପୁଅଟି ନାଚେ ।
ଘର ଭଗାରିଏ ତାଟନ୍ତି ଭଇରୁ ଉଇରୁ ପଡ଼ିବା ଡର
ରହିଥାଏ ଜାଣି ଓଡ଼ିଆ ପୁଅଙ୍କ ନିମ୍ନଗତ ନିରନ୍ତର ।"

ଓଡ଼ିଆ ପୁଅ ମନେ ମନେ ସବୁ କିଛି କଳ୍ପନା କରିଥାଏ; କିନ୍ତୁ ତାକୁ କାର୍ଯ୍ୟକାରୀ କରିବାକୁ ତା'ର ଚେଷ୍ଟା କି ଆନ୍ତରିକତା ନ ଥାଏ । ପୁଣି ପତନ ଭୟରେ ସେ ଉତ୍ଥାନ ପାଇଁ ଚେଷ୍ଟା କରେ ନାହିଁ । ତେଣୁ କ୍ରମିକ ଅବନତି ହିଁ ତାର ସ୍ୱାଭାବିକ ପରିଣତି । ଓଡ଼ିଆ ସମସ୍ତ ଅନ୍ୟାୟ ଅତ୍ୟାଚାରକୁ ମୁଣ୍ଡ ପାତି ସହିଯାଏ; ଭୀରୁ ପଥରଠାରୁ ମଧ୍ୟ ତା'ର ସହିଷ୍ଣୁତା ଅଧିକ ଏଥିରେ ସନ୍ଦେହ ନାହିଁ । ବାଣିଜ୍ୟ ବିଷୟ ପଚାରିଲେ ସେ ତା'ର ବୋଇତ ବନ୍ଦାଣ ଓ ସାଧବ ବେପାର କଥା କହେ, ଶିଳ୍ପ କାରଖାନା କହିଲେ ସେ ତା'ର କୋଣାର୍କକୁ ଦୃଷ୍ଟାନ୍ତ ଦିଏ । କିନ୍ତୁ ଆଜି ଅନ୍ୟମାନେ ବାଣିଜ୍ୟ ଓ ଶିଳ୍ପରେ ବିଶେଷ ଉନ୍ନତି କରିଥିଲେ ସୁଦ୍ଧା ଓଡ଼ିଆ ବହୁତ ପଛରେ ପଡ଼ିଛି । କବି ଯଥାର୍ଥରେ କହିଛନ୍ତି—

"କେଜାଣି କାହିଁକି ଓଡ଼ିଆ ଶୋଣିତ
ଥଣ୍ଡା ହୋଇଗଲା ଆସି
ହାଣ କାଟ ମାର ଯେତେ ପାହା କର,
ଓଡ଼ିଆ ଉଡ଼ାଏ ହସି ।
କାହିଁ କାହିଁ କେତେ ବାଣିଜ୍ୟ କୌଶଳେ
ଓଡ଼ିଆର ଘରେ ପଶି
ବୋହି ନେଉଛନ୍ତି ଖୁଦ କଣିକି
ଓଡ଼ିଆ ଦେଖନ୍ତି ବସି ।"

କବି ତେଣୁ ପରିହାସରେ କହିଛନ୍ତି—

"ଶୋଇଥା ଶୋଇଥା ଓଡ଼ିଆ ପୁଅ ରେ
ଶୋଇବାଟା ବଡ଼ ମଜା
ନାହିଁ ତ ପଛୁଆ ସମସ୍ତେ ଜାଣନ୍ତି
ଉଡ଼ୁଥିଲେ ଗାପ ଧ୍ୱଜା ।

ସେହିପରି "ଦେଖୁଥା, ଦେଖୁଥା" କବିତାଟିରେ ଓଡ଼ିଆ ଜାତିର ବୃଥା କାଳକ୍ଷେପଣ ନୀତି ଓ ନିଶ୍ଚେଷ୍ଟତାକୁ ବିଦ୍ରୂପ କରି ଗାଇଛନ୍ତି--

"ଶୂନ୍ୟ ଗଗନକୁ ଅନାଇଁ ରହିଁଥିଲେଟି ହେଲେ
ଆକାଶରୁ ଲଡୁ ଖସିବ ଆଶା ପୂରିବ ବେଳେ ।"

ପୁଣି— "ଖଣି ଖଣି ପାଚି ସୁବର୍ଣ୍ଣ ଫଳ ପଡ଼ୁଛି ଝଡ଼ି
ଖାଇ ନ ଜାଣନ୍ତି ଓଡ଼ିଆପୁଏ ମରନ୍ତି ଗଡ଼ି ।
ଦେଶରେ କାହୁଁ ଆସି ଅମୀୟ ଶୋଷି ଯାଆନ୍ତି ଉଡ଼ି
ଓଡ଼ିଆ ପୁଅଙ୍କୁ ନ ମିଳେ ମୁଠା ପେଟକୁ ମୁଢ଼ି ।"

(ଗଣୁଥା କବି)

ଏହି କବିତାଟିରେ ଲେଖକ ଜାତି-ଜନକ ମଧୁସୂଦନଙ୍କ ମାଙ୍କଡ଼ କଥା ଦୃଷ୍ଟାନ୍ତ ଦେଇଛନ୍ତି । ଏହି କଥା ମଧୁସୂଦନ ବାରମ୍ବାର ଆମର ଜାତି ଉପଲକ୍ଷେ କହନ୍ତି । ସେ କଥାଟି ହେଉଛି ଯେ, "ଜଣେ ଲୋକ ଜଗୁଆଳି ଗଛରେ ବସି ନାରିକେଳର ଫଳ ଖାଉଥିବା ଗୋଟିଏ ମାଙ୍କଡ଼କୁ ଚାଲି ଯାଇ ଯେତେ ଭୟ ଦେଖାଇଲେ ମଧ୍ୟ ମାଙ୍କଡ଼ଟି ଯାଏ ନାହିଁ । ବରଂ ସେ ଥରେ ଥରେ ଦାନ୍ତ ନିକୁଟି ଲୋକଟିକୁ ଭୟଭୀତ କରାଏ । ଜଗୁଆଳିଟି ସାହସ କରି ଯେତେବେଳେ ଚଟକେ ଢେଲାଏ କିମ୍ବା ଟେକା ଫୋପାଡ଼ିଦିଏ, ମାଙ୍କଡ଼ ଭୟରେ ଗଛରୁ ଓହ୍ଲାଇଯାଏ ।" ସେହିପରି ଓଡ଼ିଆ ପୁଅ ନିଜେ କୌଣସି ପ୍ରକୃତ କାର୍ଯ୍ୟ ନ କରି କେବଳ ଅନ୍ୟକୁ ସମାଲୋଚନା କଲେ କିମ୍ବା ବାହାର ଲୋକେ ଆସି ସବୁ ନେଇଯାଉଛନ୍ତି ବୋଲି କହିଲେ ବିଶେଷ ଲାଭ ହେବ ନାହିଁ । ଧନ ନ ଗଣି ସେ କାର୍ଯ୍ୟକ୍ଷେତ୍ରରେ ନିଜଶକ୍ତି ଓ ଉନ୍ମାଦନାରେ ଅଗ୍ରସର ହେବା ଉଚିତ । କବି ତେଣୁ କହିଛନ୍ତି—

"ଗଣାଗଣି ପାଠ ପାଶୋର ଲାଗିଗଲେ ଲୋକରେ
ସିଂହ ପଟ୍ଟ ଅଣ୍ଟ ଉପୁଡ଼ି ଛୁଡ଼ା ହେବ ଦାଣ୍ଡରେ ।" × ×
ନଚେତ୍

ଗଣି ଗଣି ରଙ୍ଗ ସାଗର ତେଜି ନ ହେବ ନିଷ୍ଠ
ଅପାର ଜଳଧି ଜଳରେ ବୁଡ଼ିଯିବଟି ଦେଶ ।"

ବାଲିକା ଜାତି ଉଚ୍ଚ ଧାପରେ ଅଗ୍ରଗତି କରୁଛନ୍ତି । କିଏ ଶିଳ୍ପରେ, କିଏ ବିଜ୍ଞାନରେ, କିଏ କଳାରେ, କିଏ ବାଣିଜ୍ୟରେ ବିଶେଷ ଉନ୍ନତି କରୁଛନ୍ତି । କିନ୍ତୁ ଆମେ କେଉଁ ଧାପରେ ବଢ଼ିଛୁ ? ଏହି କଥା "ବଢ଼ୁଆ ବଢ଼ୁଆ" କବିତାଟିରେ କବି ଦେଖାଇଛନ୍ତି ।

"ବଢ଼ୁଆ ବଢ଼ୁଆ ଆଣ୍ଟ ବୁଜ ଘଇ
ଯେ ଯାର ଧାନ୍ଦରେ ବଢ଼ି
ସବୁଠାରୁ ବଡ଼ ଧଣିବ ଶୁଣିଲେ
ନଡ଼ିଆ ଗଛରେ ଚଢ଼ି ।
ବଡ଼ ଥିଲେ ଆମ୍ଭ ପୂର୍ବ ପୁରୁଷ
ବଡ଼ ଦେଉଳକୁ ଅନା
ଯାହାକୁ ପଚାର ଜଗତେ ଏ କଥା
କେହି ନ କରିବେ ମନା ।"
× × ଧାନଦଉଲତ ବଢ଼ିଲା କାହାର
ମାନରେ ବଢ଼ିଲେ କେହି
ଶତଗୁଣେ ଆମ୍ଭ ଦାରିଦ୍ର୍ୟ ବଢ଼ିଛି
କୋହେ କି ବଢ଼ିବା ଏହି ।

ବଢ଼ୁଅଛି ଦେଶେ କାଙ୍ଗାଳିଙ୍କ ସୀମା
ବଢ଼ୁଅଛି ଅମ୍ଭ ଦୁଃଖ
ଟାଉଟିଆ ଘଇଙ୍କ କେବାଦ ବେଲକୁ
ବଢ଼ୁଅଛି ଚଉଭୁଜ ।"

ତା'ପରେ କପଡ଼ା ଜିନିଷ ଦ୍ରବ୍ୟର ଦର, ଶଳାସବ୍ୟସନ, ଚଢ଼ି ସିଗାରେଟ ଧୂଆଁ, କଲଣ୍ଡା ନେହ୍ରଗ, ମଶାମାଛି, ଶଲ୍ଧଆ କୁକୁର, ସାଲଟୀ, ବ୍ରାହ୍ମଣୀ, ମହାନଦୀ ପ୍ରଭୃତି ଓଡ଼ିଶାରେ ସମସ୍ତ ବଢ଼ିଛି, ତାହା ହାସ୍ୟରସିକ କବି ସରସ ଭାବରେ ବର୍ଣ୍ଣନା କରିଛନ୍ତି । ସମସ୍ତଙ୍କର କଟକ ବାହ୍ୟାଡ଼ମ୍ବର ଓ ସଭ୍ୟ ଚୈତେଷାପୂରେ କପଟ ଶଠତା ନଢ଼ିନୁଲଛି, ତାହାକୁ କଟା ନଦେଖାଇବାକୁ ଯାଇ ଲେଖିଛନ୍ତି —

"ଡାକ୍ତରଖାନାରେ ଔଷଧ ଜଳକେ ବଢୁଛି ଏକୁଆ ଭୃଗ
ତହିଁ ସଙ୍ଗେ ସଙ୍ଗେ ଡାକ୍ତରଙ୍କର ବଢ଼ିଛି ହାତର ବାଗ ।
ଉକିଲମାନଙ୍କ ସଂଖ୍ୟା ବଢ଼ିଅଛି, ବଢ଼ିଅଛି ତାଙ୍କ ଫେଶ
ଅନସୁଆଟଣ ବଢ଼ି ଖୋଙ୍କର ଜମିରେ ବଢ଼ୁଛି ବେଶ ।"

ଏହାପରେ ସେ କାହାକୁ ସମାଲୋଚନା ନ କରି ରହି ନାହାନ୍ତି । ସେ କହିଛନ୍ତି —

"ବଢ଼ିଅଛି କେତେ ନେତା ନେତ୍ରୀ ବଢ଼ିଛି ସମିତି ସଭା ।" କିନ୍ତୁ "ସବୁଠାରୁ ବେଶି କଟକ ସହରେ ବଢ଼ିଛି ମଇଳା ପାଣି ।" ଇତ୍ୟାଦି ଲେଖି କବି ଗୋଟିଏ ବାସ୍ତବ ଚିତ୍ର ରୂପାୟନ କରିଛନ୍ତି । ଏହାକୁ ପାଠକଲେ ଲବ୍ଧପ୍ରତିଷ୍ଠ ହାସ୍ୟକବି ଶାସ୍ତ୍ରୀ ଗୋଦାବରୀଶ ମହାପାତ୍ରଙ୍କ "ନାଅଁ ଖାଣ୍ଟି" କଥା

ପଢ଼େ । ତା'ପରେ "ଉତ୍ଥା ଉତ୍ଥା" କବିତାଟିରେ କବି ଭକ୍ତାଷ୍ଟ ଚରଣ ଆମ ଜାତିର ଉଦ୍ବେଳିତ ଧ୍ୱନିକୁ କଣ୍ଠାଗ୍ରଦାନ କରିଛନ୍ତି । ପିଲଦିନରୁ ସମସ୍ତଙ୍କୁ ଉଠ ଉଠ ଓଡ଼ିଆର ନିନାଦ, ଦେଶାଭିମାନ-ମୁଗ୍ଧ ବେଗ ପାଏ । ବଡ଼ହେଲେ ପ୍ରକୃତି କରି ନିଜର ଆଶା ଓ ନିଜସ୍ୱ କଳ୍ପନା ହରାଇବସେ । କବି ତେଣୁ କହୁଛନ୍ତି ଉଠ ଆମ ଜାତି ହତବୁଦ୍ଧି ଓ ହତଶ୍ରୀ ହୋଇଛି । ଯଥାର୍ଥରେ କବିଙ୍କ ପଦରେ ସେ ଗୋଟିଏ ବାସ୍ତବ ସତ୍ୟ ଉପସ୍ଥାପନ କରିଛନ୍ତି ।

"ଉଠ ବୋଲି ଯେତେ ଅମ୍ଭେ ଡାକୁଲୁ ଜାତି
ଜାଣି ଜାଣି ସର୍ବେ ଅଛି ଅମ୍ଭଙ୍କୁ ଉପେକ୍ଷି ।
ବହୁବାର ଯେବେ ଉଠେ ନ ପାରିବା ଖାଇ
କାହାକୁ ନିନ୍ଦିବା ନିଜ କର୍ମଦୋଷ ପାଇଁ ।"

ସ୍ୱର୍ଣ୍ଣପ୍ରସୂ ଉତ୍କଳ ଖଣିଜ ଧନରତ୍ନ ଓ ପ୍ରାକୃତିକ ସମ୍ପଦରେ ସମୃଦ୍ଧ । କିନ୍ତୁ ଓଡ଼ିଆ ତା'ର ଦୁର୍ବଳତା ଓ ଆତ୍ମସ୍ମୃତି ହୋଇ ଘରେ ଥାଇ ଉପାସରେ ଶୁଏ ଏବଂ ପ୍ରବାସୀ ହୋଇ କାଳଯାପନ କରେ । ଏହାଠାରୁ ବଳି ନିନ୍ଦା ଓ ଲଜ୍ଜାର ବିଷୟ କ'ଣ ହୋଇପାରେ ? ଅମ୍ଭମାନଙ୍କୁ ସାହସୀ ଓ ସାଧନନିଷ୍ଠ ହୋଇ ନିଜ କର୍ମସରଣୀରେ ନୂଆ ଶକ୍ତି, ସାମର୍ଥ୍ୟ ଓ ପ୍ରାଣ-ପ୍ରାଚୁର୍ଯ୍ୟ ନେଇ ଅଗ୍ରସର ହେବାକୁ ପଡ଼ିବ । ଏବେ ମଧ୍ୟ ଆମର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଓ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୟାନନ୍ଦ ପଟ୍ଟନାୟକ ଯୁବକମାନଙ୍କୁ ସାହସୀ ଓ କର୍ମଠ ହୋଇ ବିପଦ-ସଙ୍କୁଳ କର୍ମପଥରେ ଆଗେଇବାକୁ ଆହ୍ୱାନ ଦେଇଛନ୍ତି । ତେଣୁ ଗୁରୁଚରଣଙ୍କ ଭକ୍ତାଷ୍ଟ ଚରଣଙ୍କ ନିଷ୍ଠାପର ମନ୍ତ୍ରୋଚ୍ଚାରଣ ଏବେ ମଧ୍ୟ ଜାତିକୁ ଅଭିମନ୍ତ୍ରିତ କରେ ।

ସ୍ୱର୍ଗୀୟ ଏକାଗ୍ର ଚରଣ ସାହିତ୍ୟରେ କେତେକ ନୂତନ ଅବାଞ୍ଛନୀୟ ଚେତ୍‌ବର୍ତ୍ତନ ଓ "ଠକ ସାହିତ୍ୟ ସେବକ "ମାନଙ୍କୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ସାହିତ୍ୟର ବିଶେଷତ୍ୱ ଓ ଶ୍ରେଷ୍ଠତା ପ୍ରଦର୍ଶନ କରିଛନ୍ତି । ଆଧୁନିକ ସାହିତ୍ୟର କେତେକ ଦୋଷ ତ୍ରୁଟି ଦେଖାଇ କବି ଗାଇଛନ୍ତି—

"କେବା ସାହିତ୍ୟକୁ କରେଣ ଧନ ଅର୍ଜନ ପନ୍ଥା
ସାହିତ୍ୟ ଅଙ୍ଗରେ ପିନ୍ଧାଉଛନ୍ତି ନାନାଦ କନ୍ଥା ।
ଭାଷା ହୋଇଗଲା ଅଭାଷା, ଭାବ ହେଲା ଅଭାବ
ମାତ ବସିଲାଣି ଭାଷାକୁ ଅନ୍ୟ ଭାଷା ପ୍ରଭାବ ।"

ବାସ୍ତବିକ ଆମ ଦେଶରେ ବର୍ତ୍ତମାନ ଶପରି ଶସ୍ତା ସାହିତ୍ୟର ପ୍ରଚାର ଘଟିଛି, ଭାଷାର ମାଧୁର୍ଯ୍ୟ ଓ ମୌଳିକତା ନ ରହି ଲେଖା ଉପରେ ଅନ୍ୟ ଭାଷାର ପ୍ରଭାବ ପଡ଼ୁଛି ଏବଂ ଉଚ୍ଚ ଓ ମହନୀୟ ଭାବଧାରାର ଅଭାବ ଓ ଦାରିଦ୍ର୍ୟ ଘଟୁଛି, ତାହା ଲେଖକ ଏଠାରେ ବର୍ଣ୍ଣନା କରିଛନ୍ତି । ପ୍ରାଚୀନ ଭାଷାର ଅନାଦର ଯୋଗୁଁ କବି କ୍ଷୁବ୍ଧ ହୋଇଛନ୍ତି । ଆମର ପ୍ରାଚୀନ ସାହିତ୍ୟରେ ଯେପରି ଉଚ୍ଚାଙ୍ଗ ଚିନ୍ତାଧାରାର ବିକାଶ, ଉଚ୍ଚ କଳ୍ପନାର ବିଳାସ ଏବଂ ଭାଷା ଓ ଶୈଳୀର ସୂକ୍ଷ୍ମକାରୁକାର୍ଯ୍ୟ ହୋଇଛି, ତାହା ଅପୂର୍ବ ଓ ଅତୁଳନୀୟ । ଏହି ସାହିତ୍ୟ ଏପରି ଅନୁକରଣୀୟ ଯେ ଏହାର ଅନୁକରଣ ସହଜସାଧ୍ୟ ନୁହେଁ । କବି ସରଳ ଓ ସରସ ଭାବରେ ଏହି କଥାକୁ କହିଛନ୍ତି—

"ଯେମନ୍ତ ଅମୂଲ୍ୟ ଯେମନ୍ତ ଜା'ର ଓଜନ ଭାର
କେହୁ ନ ଛୁଅନ୍ତି ସେ ଧନ ତାକୁ ନେଇ ନ ପାରି ।"

କିନ୍ତୁ ଏହାର ଅନୁଶୀଳନ ଓ ଆଲୋଚନା ନାହାନ୍ତି ଦରକାର । ଏ ଦିଗରେ ଆଳି ରାଜା ବ୍ରଜସୁନ୍ଦରଙ୍କ ପରି ଯେଉଁମାନେ ପାରଦର୍ଶିତା ଲାଭ କରିଛନ୍ତି, କବି ସେମାନଙ୍କୁ ସାଧୁବାଦ ଜଣାଇଛନ୍ତି । ସେତେବେଳେ ଲବ୍ଧପ୍ରତିଷ୍ଠ ସମାଲୋଚକ ଅଗ୍ରଣୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ସାଧନା ବିଷୟରେ କହିବାକୁ ଯାଇ ଲେଖିଛନ୍ତି—

"ଆରତ ପଣ୍ଡିତ ଆରେକ ତାଳ ତଳ ପୋଥି
ଖୋଜି ଖୋଜି ତା'ର ମୁହିଁଟି ହୋଇଗଲାଣି ପୋଥି ।"

କିନ୍ତୁ "ଏହାଙ୍କ ପରିକୁ ଆରତ କେହୁ ଦିଶଇ ନାହିଁ
ପୁରୁଣା ସାହିତ୍ୟ କୁସୁମ ରସ ଗୃହିବା ପାଇଁ ।"

ଆଜିକାଲି ଧର୍ମ-ସଂସ୍କାର ନାମରେ ଅନେକ ଅନାଚାର ଓ ଅଧର୍ମର ପ୍ରସାର ଘଟିଛି । ଜାତି ପ୍ରଥା ଦୂର କରିବାକୁ ଇଚ୍ଛାକରି ବେଶି ଜାତିଭେଦ ବୃଦ୍ଧିପାଉଛି; ସଂକୀର୍ଣ୍ଣତା ଦୂର କରିବାକୁ ଇଚ୍ଛା କରି ବେଶି ଦଳଗତ ଓ ବ୍ୟକ୍ତିଗତ ସଂକୀର୍ଣ୍ଣତା ଓ ସ୍ୱାର୍ଥାନ୍ଧତା ପ୍ରସରି ଯାଉଛି । କବି ଯଥାର୍ଥରେ କହିଛନ୍ତି—

"ସଂକୀର୍ଣ୍ଣତା ଦୂର ପାଇଁକି ଯେତେ ଶୁଭେ ତହଲ
ସ୍ୱାର୍ଥ ସଂକୀର୍ଣ୍ଣତା ବିକାଶ ଫୁଟି ଉଠେ ପ୍ରବଳ ।"

କବି ସେହିପରି "ସମାଜ ସଂସ୍କାର"ରେ ସମାଜ ସଂସ୍କାର ଆଇନ ଓ ତା'ର ଆବଶ୍ୟକତା ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି । ବାଲ୍ୟ ବିବାହ, ବିଧବା ବିବାହ, ଯୌତୁକ ପ୍ରଥା ବିଷୟରେ ବର୍ତ୍ତମାନ ପରିବର୍ତ୍ତିତ ପରିସ୍ଥିତିରେ ନିଜର ମନୋଭାବ ପ୍ରକାଶ କରିଛନ୍ତି। କାରଣ, ସାଆନ୍ତଙ୍କ ତମ ବର୍ତ୍ତମାନ ଅର୍ଥନୀତିକ ସ୍ରୋତରେ ପାଣି ପାଟିଗଲାଣି । ତେଣୁ କବି କହିଛନ୍ତି—

‘‘ଭଟ୍ଟୋ ହାଣ୍ଡି ଛୁ ଗଳଣି ଲଭ ନେସ କୋଟି ଭପ
ନେରେଣି କଂସାଟି ଅଲଣା ହୁଛି ହେଲଣି ଭ୍ରମ ।”

ଆଧୁନିକ ସମାଜରେ ଭାଇ ଭଉଣୀ, ବାପ ପୁଅ, ଶାଶୁ ବୋହୂ ପ୍ରଭୃତିଙ୍କ ମଧ୍ୟରେ ଥିବା ସ୍ନେହମୟ ସାମାଜିକ ବନ୍ଧନ ଶିଥିଳ ହୋଇଯାଉଛି । ପୂର୍ବେ ଉଚ୍ଛୁଳା ପ୍ରେମ-ପ୍ରୀତିର ସେ ନିଗୂଢ଼ ବନ୍ଧନରେ ସମସ୍ତେ ଆବଦ୍ଧ ଥିଲେ । ତେଣୁ କବି ବ୍ୟଙ୍ଗ କରି କହୁଛନ୍ତି—

‘‘ଭାଇର ସମ୍ପର୍କ ବନ୍ଧନ ନାହିଁ ଭଉଣୀଠାରେ
ବାପ ମାଆ ବୁଢ଼ା ହେଲେଣି ତାଙ୍କୁ କଏ ପଚାରେ ।”

ବର୍ତ୍ତମାନ ବିଶ୍ୱପୃଷ୍ଠରେ ଚତୁର୍ଦ୍ଦିଗରେ ଅଶାନ୍ତି, ହାହାକାରର କୋଳାହଳ, ଦୁର୍ଭିକ୍ଷ ଓ ଅମୂଲ୍ୟ ବସ୍ତୁର ଧ୍ୱଂସ ସାଧନ କବିଙ୍କ ମନରେ ସୃଷ୍ଟି କରିଛି ବ୍ୟଥା ଓ ବେଦନାର ନିର୍ଝର । ବିଜ୍ଞାନର କୋପ ଏବଂ ଏହାର ଅସତ୍ ବ୍ୟବହାର ମାନବ ଜାତିକୁ ବିପଦ-ସଂକୁଳ ପରିସ୍ଥିତିରେ ପକାଇଛି । କବି ତେଣୁ ଦୁଃଖ ପ୍ରକାଶ କରି କହିଛନ୍ତି—

‘‘ମନୁଷ୍ୟ ସ୍ୱଭାବରେ ନାହିଁ ତିଳେ ଭ୍ରାନ୍ତି
ଘୋଟିଛି ଜଗତରେ କି ଘୋର ଅଶାନ୍ତି । × × ×
ବିଜ୍ଞଜନେ କରି ବିଜ୍ଞତା ଅର୍ଜନ
ମୃତ୍ୟୁଯନ୍ତ୍ର ଖୋଲି କଲେ ଉଦ୍ଭାବନ ।”

ବିଭିନ୍ନ ମହାମାରୀ ଯନ୍ତ୍ରର ଉଦ୍ଭାବନ ଓ ବୈଜ୍ଞାନିକ ଅଗ୍ରଗତି କବି ମନରେ ସନ୍ଦେହ ଓ ସଂଶୟର ଗମ୍ଭୀର ରେଖାପାତ କରିଛି । ସେ ତେଣୁ ଗାଇଛନ୍ତି—

"ପିପିଲିକା ଯଥା ନିଜ ସୁଖେ ଥାଏ
ପକ୍ଷ ହେଲେ ଉଡ଼ି ଆପେ ଧ୍ୱଂସ ପାଏ ।
ମନୁଷ୍ୟ ତେସନ ଶିଖିଲାଣି ଉଡ଼ି
ମନୁଷ୍ୟ ସମାଜ ଯିବ ପରା ବୁଡ଼ି ।"

ଅବଶେଷରେ କବି ସୃଷ୍ଟିକାରୀଙ୍କଠାରେ ଆତ୍ମସମର୍ପଣ କରିଛନ୍ତି । ସମାଜରେ ଧର୍ମଭାବ ଓ ଈଶ୍ୱର ବିଶ୍ୱାସର ହ୍ରାସ ହେତୁରୁ ସ୍ୱାର୍ଥଲିପ୍ସା ଓ ହିଂସାଭାବ ବୃଦ୍ଧିପାଇଛି । ସେ ଜନ୍ମ ଆଶାୟୀ ଯେ, ମନୁଷ୍ୟମାନେ ଯେତେବେଳେ ପବିତ୍ର ଚରିତ୍ର ଆଚରଣ କରିବେ, ସମସ୍ତ ଅନୀତି ଅତ୍ୟାଚାରର ଘୂଞ୍ଚିଯିବ, ବିଶ୍ୱରେ ଶାନ୍ତି ସୁଖର ପ୍ରସ୍ରବଣ ଛୁଟିବ । ଏଥିରେ କବି ଆଶ୍ୱସ୍ତ ହୋଇ ଗାଇଛନ୍ତି—

"ପ୍ରକୃତିର ଶିବ ହୋଇବ ରୁଚିର
ରୂପ ଫେରିଯିବ ଏହି ପୃଥିବୀର ।
ଶାନ୍ତି ଅବତାର ଜଠିବ ଗଢ଼ିକି
ଅଶାନ୍ତି କାଳିମା ଯିବ କ୍ରମେ ହଟି ।"

ମାନବ ସମାଜ ପାଇଁ ମଙ୍ଗଳମୟ ବିଶ୍ୱ-ପିତାଙ୍କର ଆଶୀର୍ବାଦ ଭିକ୍ଷା କରି କବି କହିଛନ୍ତି—

"କର କୃପା ପ୍ରଭୁ ତୁମ୍ଭ କଲ୍ୟାଣରୁ
ଏ ଘୋର ଅଶାନ୍ତି ଘୁଞ୍ଚୁ ଜଗତରୁ ।"

ମାନବବାନ୍ଧବ କବିଙ୍କର ଏହି ଶୁଭେଚ୍ଛା ଓ ଆଶାବାଣୀ ଆଜିର ଅଶାନ୍ତିମୟ ଓ ସନ୍ତ୍ରସ୍ତ ବିଶ୍ୱରେ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । କେବେ ସେହି ଆଶାୟୀ କବିଙ୍କ ମନସ୍କାମନା ପୂର୍ଣ୍ଣ ହେବ ?

୧୯୦୮ ମସିହାରେ କବି ଭିକାରୀଚରଣ ପଟ୍ଟନାୟକ "ଆଜ ଆମ ଦେଶ" ଶିରୋନାମାରେ ଅନେକ ଜାତୀୟ ସମସ୍ୟାକୁ ଆଲୋଚନା କରିଛନ୍ତି । କବି ପ୍ରଥମେ "ଭାରତ" ପ୍ରକାଶରେ କିପରି ଆମ ଦେଶ ବର୍ତ୍ତମାନ ପରମୁଖାପେକ୍ଷୀ ହୋଇଛି ତାହା ବର୍ଣ୍ଣନା କରିଛନ୍ତି । ଅତୀତ ଉତ୍କଳ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ଶିଳ୍ପ ବାଣିଜ୍ୟରେ ସମୃଦ୍ଧ ଥିଲା କେବଳ ଏହି ବୀରତ୍ୱ ଓ କର୍ମପ୍ରବଣତା ଯୋଗୁଁ । ବର୍ତ୍ତମାନ କିନ୍ତୁ ବାକ୍ୟବୀରମାନଙ୍କରେ ଦେଶ ଭରପୂର ହୋଇଛି । ତେଣୁ ସେ ଦେଶବାସୀଙ୍କୁ ଏକତାବଦ୍ଧ ହୋଇ ବୀର ପରି ଜାଗି ଉଠିବାକୁ ଆହ୍ୱାନ କରିଛନ୍ତି ।

"ଉଠ ହେ ଉଠ ହେ ଓଡ଼ିଆ, ବୀର ଉଠ ହେ ମାତ
ଦେଶ ଲୋଡ଼ିଲଣି ତୁମକୁ ଉଠ ଫୁଲାଇ ଛାତି ।
ଭାଇ ଭାଇ କଳି କଳହ ଭୁଲିଯାଅ ସକଳ
ସବେ ମିଳି ମିଶି ଦେଖାଇ ନିଜ ବଳ କୌଶଳ ।"

ସେହିପରି ପୂର୍ବର "ଶିଳ୍ପ" ନୈପୁଣ୍ୟ ଏବେ ମଧ୍ୟ ବିଭିନ୍ନ ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ହୋଇ ରହିଛି । "ଉତ୍କୃଷ୍ଟ କଳାରୁ ଉତ୍କଳ ନାମ ଅଛି ଅଗରୁ ।" ଏହାର ଗୃହକଳା ଓ ବାସ୍ତୁକାର୍ଯ୍ୟ ଜଗତରେ ଶ୍ରେଷ୍ଠ ହୋଇଥିଲା । କିନ୍ତୁ ଆଜ ସେସବୁ ନାହିଁ । ବାଣିଜ୍ୟରେ ସାଧବ ପୁଅର ଦକ୍ଷତା ମଧ୍ୟ ଅସାଧାରଣ ଥିଲା । "ବୋଇତ ବନ୍ଦାଣ" ପ୍ରଭୃତି କେତେକ ସ୍ମୃତି କେବଳ ଆଜ ଓଡ଼ିଆକୁ ତାହା ଚେତାଇଦିଏ ।

ଶ୍ରୀଚରଣ ଭକ୍ତ ଭିକାରୀଚରଣ ଅନେକ ସମୟରେ ସମାଜର ଉପଯୋଗୀ ଅନେକ ପୁସ୍ତିକା ପଦ୍ୟାକାରରେ ଲେଖି ପ୍ରକାଶ କରିଥିଲେ । ସେଥିରେ ଆମେ ତାଙ୍କୁ ଜଣେ ବ୍ୟଙ୍ଗକାର ବା

ସମାଲୋଚକ ରୂପରେ ନ ଦେଖି ଜଣେ ଉପଦେଷ୍ଟା ଓ ପରାମର୍ଶଦାତା ଭାବରେ ଗ୍ରହଣ କରିବା । ସେ 'କୁଟୀରଶିଳ୍ପ', 'ସହଯୋଗ', 'ଚଷାଭାଇ', 'ଗୋପାଳ' ପ୍ରଭୃତି ପୁସ୍ତିକାଗୁଡ଼ିକ ମାଧ୍ୟମରେ ସମାଜର ଅତୀବ ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକୁ ଆଲୋଚନା କରିଛନ୍ତି ଏବଂ ଅଶିକ୍ଷିତ ଅଜ୍ଞ ଗ୍ରାମବାସୀମାନଙ୍କୁ ବିକାଶର ପଥ ନିର୍ଦ୍ଦେଶ କରିଛନ୍ତି । ଆଜି କାଲି ସରକାରଙ୍କ ତରଫରୁ ଏପରି ଚେଷ୍ଟା କରାଯାଉଛି । କିନ୍ତୁ ତାହା ସେପରି ହୃଦ୍ୟ ଓ ମନୋଜ୍ଞ ହୋଇପାରୁନାହିଁ । କିନ୍ତୁ ଭିକାରୀଚରଣ ଲୋକପ୍ରିୟ ଛନ୍ଦରେ ସଙ୍ଗୀତର ସ୍ୱର ଲହରୀ ମଧ୍ୟରେ ଗଠନମୂଳକ ବାଣୀ ପ୍ରଚାର କରୁଥିଲେ ଏବଂ ସୁଦୂର ପୁରପଲ୍ଲୀର ଅଧିବାସୀମାନେ ଏହାଦ୍ୱାରା ପ୍ରଭାବିତ ହେଉଥିଲେ । ଏ ସମ୍ପର୍କରେ ସ୍ୱଳ୍ପ ଦୃଷ୍ଟାନ୍ତ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । ସେ ୧୯୩୫ ମସିହାରେ 'ଚଷାଭାଇ' ଶୀର୍ଷକ ପୁସ୍ତିକାଟିରେ ତତ୍କାଳୀନ ନିସ୍ୱ, ନିରନ୍ନ କୃଷିକାରର ଅନ୍ତରର ବାଣୀ ରୂପ ଦେଇଛନ୍ତି । କୃଷକ କିପରି ତାକୁ ଖାଲ ନଳପାଣିରେ ପାରି ଫସଲ ଫଳାଇ ଶେଷରେ ଜମିଦାର, ସାହୁକାରର କରଜ ଶୁଝିବାରେ ବା ସେମାନଙ୍କର ଚକ୍ରାନ୍ତରେ ସର୍ବସ୍ୱାନ୍ତ ହୋଇଥାଏ, ତାହା ଦରଦୀ ଲେଖକ ସରସ ଭାବରେ ବର୍ଣ୍ଣନା କରି ଯୁଗୋପଯୋଗୀ କର୍ମପନ୍ଥା ଅବଲମ୍ବନ କରିବାକୁ ତାକୁ ଆହ୍ୱାନ କରିଛନ୍ତି । ତା'ର ଜମିରେ ସେ କେବଳ ଧାନ ଚାଷ ନ କରି ଆଖୁ, ଚିନାବାଦାମ, ଆଳୁ ଓ ପନିପରିବା ପ୍ରଭୃତି ଚାଷ କଲେ କିପରି ଲାଭବାନ ହୋଇପାରିବ, କବି ତାହା ବାସ୍ତବ କରି ବତେଇଛନ୍ତି । ଚାଷୀ ପ୍ରକୃତରେ ଟଙ୍କାର ରୂପ ଦେଖିପାରେ ନାହିଁ । ମହାଜନର ଦେଣା ତାକୁ ସର୍ବଦା ଦୂର କରେ । ତେଣୁ କବି ଗାଇଛନ୍ତି—

"ଠଙ୍କା ଠଙ୍କା ବୋଲି                    ଖାଲି ଝୁଁରି ହେଲେ
ଠଙ୍କା ତ ନ ଆସେ ଧାଇଁ
ଠଙ୍କା ଆସିବାର                    ବାଟ ଜଲେ ସିନା
ଘରେ ବସି ଠଙ୍କା ପାଇ ରେ
ଠଙ୍କା ଆସିବଟି ଧାଇଁ
ବାଟ କଲେ ସିନା ଠଙ୍କା ପାଇ ରେ
ଠଙ୍କା ଆସିବଟି ଧାଇଁ ।

ତା'ପରେ କବି ଗୋ-ସମ୍ପଦର ଉନ୍ନତି ପାଇଁ ଯତ୍ନ କରିବାକୁ କୃଷକଙ୍କୁ ପରାମର୍ଶ ଦେଇଛନ୍ତି । ସେହି ମହାନ୍ ସମ୍ପଦର ଅବହେଳା ଉପରେ ତା'ର ନିଜର କ୍ଷତି ସାଧନ କରୁଛନ୍ତି, ସେ ତାହା ଦେଖାଇ ଦେଇଛନ୍ତି । 'ସହଯୋଗ' ନାମକ ଏକ କବିତା ପୁସ୍ତିକାରେ ଗ୍ରାମବାସୀଙ୍କର ଐକ୍ୟ ଓ ମୈତ୍ରୀ ପାଇଁ କବି ଆହ୍ୱାନ କରିଛନ୍ତି । ପରସ୍ପର ମଧ୍ୟରେ ବିବାଦ ଓ ମନୋମାଳିନ୍ୟ ରହିବା ଦ୍ୱାରା ଉପରେ ସେମାନଙ୍କର ଶୋଷକ ଓ ଅତ୍ୟାଚାରୀ ଜମିଦାର ଓ ମହାଜନ ଲାଭ ଉଠାଉଥିଲେ, ତାହା ଲେଖକ ଆଲୋଚନା କରିଛନ୍ତି । ଅବସର ସମୟରେ କୁଟୀର ଶିଳ୍ପ, ଅନେକ ପ୍ରକାର ଲାଭଜନକ କୃଷି, ସ୍ୱାସ୍ଥ୍ୟ ଉନ୍ନତି ସମ୍ବନ୍ଧୀୟ କାର୍ଯ୍ୟମାନ ସହଯୋଗ ନୀତିରେ କଲେ, ସେମାନେ ବିପଦ-ଜାଲରୁ ମୁକ୍ତ ପାଇ ଅଧିକ ସୁଖୀ, ସମୃଦ୍ଧ ଓ ସୁସ୍ଥ ହୋଇପାରିବେ । ତାହା କବି ବ୍ୟାବହାରିକ ( **Practical** ) ଦୃଷ୍ଟିକୋଣରୁ ବିଚାର କରି ଉପଦେଶ ଦେଇଛନ୍ତି ।

ସେ ଭାଟ ପରି ଗାଇ ଉଠିଛନ୍ତି—

"ଗାଆଁରେ ଭାଇଏ ସବୁ ହୋଇ ଏକପ୍ରାଣ
ଏକମନେ ହେବ ନିଜ ଗାଆଁର କଲ୍ୟାଣ

ସତ୍‌ଯୋଗ ମାତ୍ର ଧର
ଯେ ଯାହା ପାରବ ପାଞ୍ଚଭାଇ ମିଶି କର ।
ଗ୍ରାମର ପଚାଶ ଭାଇ ହେବ ଯେବେ ଏକ
ସବୁଦିନେ ସବୁଠାରେ ରହିଥିବ ଟେକ
ଏକତାହିଁ ମହାବଳ
ଏକତା ଅଭାବେ ସବୁ ହୁଅଇ ବିଫଳ ।"

କବି ଏସବୁଥିରେ ମନ୍ତ୍ରଦାତା କବି ଯେପରି ଭାବରେ ଗ୍ରାମବାସୀଙ୍କୁ କର୍ତ୍ତବ୍ୟପର ହେବାକୁ ଆହ୍ୱାନ କରିଛନ୍ତି, ତାହା ଅତ୍ୟନ୍ତ ଦୁର୍ଲ୍ଲଭ । ହାତର ମହତ୍ତ୍ୱ ତାଙ୍କର କୃତିରେ ଅପୂର୍ବ ଭାବରେ ଅଭିବ୍ୟକ୍ତ । ବାସ୍ତବରେ ବିଶ୍ୱସୃଷ୍ଟିର ସମସ୍ତ ସଂସ୍ଥା, ଅନୁଷ୍ଠାନ ଓ କୃତି ଏହି ଶକ୍ତିଦଣ୍ଡ ଅସ୍ତ୍ରଦ୍ୱାରା ରୂପ ନିଏ । କବି ତେଣୁ 'ହାତ' ଶୀର୍ଷକ ଏକ କବିତାରେ କହିଛନ୍ତି :—

"ନିତ ନିତ ଯାହା ଯେତେ ଦେଖୁଅଛ
କେ ଗଣିବ ସେ ସକଳ
ସବୁଥିରେ କିନ୍ତୁ ପୂର୍ଣ୍ଣ ରହିଅଛି
ଏହି ହାତ କଉଶଳ ।
ହାତ ଗୁଣେ ଆମ୍ଭ ପୂର୍ବ ପୁରୁଷେ
ଲଭିଥିଲେ ଧନେ ଖ୍ୟାତି
ହାତ କରାମତି ନ ଚାହିଁ ଏବକୁ
ହେଲୁ ଆମ୍ଭେ ହୀନ ଜାତି ।"

ଏହିପରି ଅଧିକାଂଶ କବିତାରେ ହାତର ଗୁଣଗାନ କରି ସମସ୍ତଙ୍କୁ 'ହାତ' ଚଳାଇବା ପାଇଁ ନିବେଦନ କରିଛନ୍ତି । ସେ ବେକାର ଯୁବକମାନଙ୍କୁ ଥରେ ବ୍ୟଙ୍ଗ କରି କହିଥିଲେ,

“ଅଭଙ୍ଗା କଣ୍ଢେଇ” ନିର୍ମାତା ଭିକାରୀଚରଣ ଆଜି ସ୍ୱର୍ଗେ ଚଢ଼ିଛନ୍ତି । ତାଙ୍କର ପ୍ରତ୍ୟେକ କର୍ମ ସଙ୍ଗୀତ ପଛରେ ନିଜର ଜୀବନ-ଦର୍ଶନ ଅନ୍ତର୍ନିହିତ । ସେ ୮୦ ବର୍ଷରୁ ଊର୍ଦ୍ଧ୍ୱ ବୟସର ବୃଦ୍ଧ ହୋଇ ମଧ୍ୟ ନିରଳସ ଓ କର୍ମତତ୍ପର ଥିଲେ । ସେ ଯେତେବେଳେ ଯାହା ଭାବିଛନ୍ତି ନିର୍ଭୟରେ କହିଛନ୍ତି ଓ ଲେଖି ପକାଇଛନ୍ତି । ତାଙ୍କ କବିତାରେ ଆମେ କବିତ୍ୱପୂର୍ଣ୍ଣ ଭାଷାର ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟ କିମ୍ବା ଭାବର ଐନ୍ଦ୍ରଜାଲିକ ରୂପ ପାଇବା ନାହିଁ । କିନ୍ତୁ ତାଙ୍କର କୃତିତ୍ୱରେ ଆମେ ଏକପ୍ରକାର ସ୍ୱାତନ୍ତ୍ର୍ୟ, ମୌଳିକତା, ସାରଲ୍ୟ, ମଧୁର ହାସ୍ୟ ଓ ବ୍ୟଙ୍ଗର ମଞ୍ଜୁଳ ସମନ୍ୱୟ ଦେଖିବାକୁ ପାଉଁ । ସମାଜର ନିଚ୍ଛକ ଚିତ୍ର ସୁନ୍ଦର ଓ ସରସ ଭାବରେ ରୂପାୟିତ । ଯଥାର୍ଥରେ ସେ “ଅବସାଦ ବାଣୀ”ରେ ଗାଇଛନ୍ତି—

“ଯେତେବେ ଯା’ ଦେଖିଛି ଯେଉଁ କ୍ଷେତ୍ରରେ
ଲେଖି ଯାଇଅଛି          ଫିଙ୍ଗାଇ ଦେଇଛି
ମେଲଣି ଚାଙ୍କୁଣୀ ଖୋଲା ଚତ୍ୱର ।

ଛାଡ଼ି ନାହିଁ ଗ୍ରାମ କୁଟୀର କନ୍ଦ
ଭିକାରି କୁଡ଼ିଆ          ପ୍ରମୋଦ ପଡ଼ିଆ
ରାଜପ୍ରାସାଦର ଅନ୍ଧାରି ସନ୍ଧି ।” × × ×

ଲେଖାଗୁଡ଼ା କେହି ପଢ଼ିବେ ଯେବେ
ସମାଜ ଭିତର          ଭେଳ କିଛି କିଛି
ବୁଝିବେ ସହଜେ ହେଜିବେ ତେବେ ।

କିନ୍ତୁ ଜାଣେ କେହି ଚହିଁବେ ନାହିଁ
ପଢ଼ିଲେ ଚିଡ଼ିବେ          କେହି ବା ଦୁଃଖିବେ
ଭାବିବେ ସେଗୁଡ଼ା ପୋଡ଼ିବା ପାଇଁ ।”

ବାସ୍ତବରେ ଲକ୍ଷ୍ମୀଚରଣ ତାଙ୍କ କବିତାଗୁଡ଼ିକରେ ଯେପରି ଅକୁତୋଭୟ, ଆତ୍ମ-ସମାଲୋଚନା ଓ ସହାନୁଭୂତି ପ୍ରଦର୍ଶନ କରିଛନ୍ତି ତାହା ଅସାଧାରଣ ।

ଗୃରଣ କାଡିଙ୍କର ଏହିସବୁ ସମୟୋପଯୋଗୀ କବିତା ଅନେକ ସଂଖ୍ୟାରେ ତତ୍କାଳୀନ ପ୍ରସିଦ୍ଧ ପତ୍ରିକା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ସତ୍ୟସନ୍ଧ ବିଶ୍ୱନାଥ କର ଏହିପରି କବିତା ଲେଖିବା ପାଇଁ ତାଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଇଥିଲେ । ସରଳ ସାବଲୀଳ ଭାଷା ଓ ସ୍ୱକୀୟ ଶୈଳୀରେ ସେଗୁଡ଼ିକ ଆତ୍ମପ୍ରକାଶ କରି ସମାଜରେ ପ୍ରଚୁର ପ୍ରଭାବ ବିସ୍ତାର କରିଥିଲା । ସାମାଜିକ ଅନ୍ୟାୟ ଅତ୍ୟାଚାର ଓ କୁନୀତି କୁସଂସ୍କାରକୁ ସେ ତାଙ୍କର ଅଗ୍ନେୟ ଶରେଣ, ସରସ ହାସ୍ୟ, ତୀକ୍ଷ୍ଣ ବ୍ୟଙ୍ଗବିଦ୍ରୂପ, ଭର୍ତ୍ସନା ମଧ୍ୟରେ କୂଟ ସମାଲୋଚନା କରିଛନ୍ତି । ପ୍ରଖ୍ୟାତ ସାହିତ୍ୟିକ ଶଶିଭୂଷଣ ରାୟ ଯଥାର୍ଥରେ କହିଥିଲେ, "ଏଗୁଡ଼ିକ ପଢ଼ି କେତେବେଳେ ହସିବାକୁ, କେତେବେଳେ କାନ୍ଦିବାକୁ, କେତେବେଳେ ମାଡ଼ ଯିବାକୁ ଇଚ୍ଛା ହୋଇଥାଏ । ଶ୍ରାବଣର ଅନର୍ଗଳ ବର୍ଷଣ ଭିତରୁ ନବ ଭାନୁର କିରଣ ଯେପରି ମଧୁର, କଣ୍ଟକ ବେଷ୍ଟିତ ଗୋଲାପର ସୌରଭ ଯେପରି ମିଷ୍ଟ, ଏ କବିତାଗୁଡ଼ିକ ସେହି ଲକ୍ଷଣାକ୍ରାନ୍ତ ବୋଲି ସର୍ବଦା ପ୍ରଶଂସମାନ ।" ବାସ୍ତବରେ ଏପରି କବିତା ଲେଖି ସେ ଅନେକଙ୍କର କୋପ ଦୃଷ୍ଟିରେ ପଡ଼ିଥିଲେ । କିନ୍ତୁ ନିରପେକ୍ଷ ସତ୍ୟବ୍ରତୀ କବିତା ପ୍ରତି ଭ୍ରୂକ୍ଷେପ କରିନାହାନ୍ତି । ତାଙ୍କର ସରସ ବ୍ୟଙ୍ଗାତ୍ମକ କବିତା ଦ୍ୱାରା ପ୍ରଭାବିତ ହୋଇ ବିଖ୍ୟାତ ହାସ୍ୟରସିକ ଛାତ୍ରକବି ଲକ୍ଷ୍ମୀକାନ୍ତ କେତେ ଦିନେ ଏହି ଧାରାରେ ଲେଖିବାକୁ ଆରମ୍ଭ କରିଥିଲେ ତାହା ସେ ଥରେ ସ୍ୱୀକାର କରିଥିଲେ ।

ସଫଳ ଭାବ ଓ କୁଶଳୀ ବ୍ୟଞ୍ଜନାର ମାଧ୍ୟମରେ ଶଙ୍କାରପ୍ରଣେତା ଚିର ସ୍ମରଣୀୟ ହୋଇ ରହିବେ । ସେହି କବିତାଗୁଡ଼ିକ ପ୍ରାଚୀନ ହେଲେହେଁ, ଅତୀତର ପୃଷ୍ଠଭୂମିକାରେ ରଚିତ ହୋଇଥିଲେହେଁ, ସେଗୁଡ଼ିକ ଚିର ନୂତନ ଓ ଗୁରୁତ୍ୱପୂର୍ଣ୍ଣ ।

ଜୀବନ ସନ୍ଧ୍ୟାରେ ମଧ୍ୟ ଏହି ଭକ୍ତ କବିଙ୍କର କଣ୍ଠ ରୁଦ୍ଧ ହୋଇ ନ ଥିଲା । ସେ ତାଙ୍କର କ୍ଷୀଣ ସ୍ୱରରେ କେତେ କଥା ଗାଇଯାଇଛନ୍ତି । କିନ୍ତୁ ତାଙ୍କୁ କିଏ ଶୁଣୁଛି ? ତାଙ୍କ ଆଖିକୁ ଭଲ ଦେଖାଯାଉ ନ ଥିଲେହେଁ ଛିଣ୍ଡା କାଗଜରେ କେତେ କ'ଣ ଲେଖି ପକାଉଥିଲେ । ସେସବୁଡ଼ିକ ପରଜାଳ କେଳାର ହୋଇ ପଡ଼ିଛି । ତାଙ୍କୁ ପଢ଼ିଲେ ଜଣାପଡ଼େ, ସେହି ଭାଷିତବ; କିନ୍ତୁ ତା' ପ୍ରତି କବିଙ୍କର ଭ୍ରୂକ୍ଷେପ ନ ଥିଲା ।

ସେ ସ୍ପଷ୍ଟ ଭାବରେ କହିଛନ୍ତି –

ମନ ପରେ ଘର ଛାଡ଼ିବାବେଳେ
ଏଣେତେଣେ ଫିଟାଫିଟି ଦେଇ
ଖୋଜିଲେ ସେସବୁ ମିଳିବ କେଉଁଠେ ।
ପଢ଼ି କିଏ କେହି ଶୁଣିବେ କେବେ
ହସନ୍ତୁ କି ଅବା ଭୁଲନ୍ତୁ ସେସ ବେଳେ
ଭୁଲିବ ମୋ ଶ୍ରମ ସଫଳ ତେବେ ।"

ଏହି ଅବହେଳିତ କବିଙ୍କର କବିତାଗୁଡ଼ିକର ସଙ୍କଳନ ହେଲେ, ତାଙ୍କର ଅମର ପ୍ରତିଭାର ଯଥାର୍ଥରେ ପୂଜା ହୋଇପାରନ୍ତା ଏବଂ ଦେଶବାସୀ ଉପକୃତ ହୁଅନ୍ତେ । ଏ ଦିଗରେ ଓଡ଼ିଆ ଜାତି ତଥା ଜାତୀୟ ସରକାର ପୂର୍ଣ୍ଣ ପ୍ରାଣରେ ସଚେଷ୍ଟ ହେବେ ବୋଲି ଆଶା ଓ ଅନୁରୋଧ ।